# କାଦମ୍ବରୀ

## ପ୍ରଥମଖଣ୍ଡ

—⍊○॰*○*॰⍊○—

ରାଜା ଶ୍ରୀସଚ୍ଚିଦାନନ୍ଦ ତ୍ରିଭୁବନଦେବ

ବାମଣ୍ଡା ।

୧୯୧୧

# କାଦମ୍ବରୀ

## ପ୍ରଥମଖଣ୍ଡ

ବାମଣ୍ଡାଧୀଶ୍ବର
ଶ୍ରୀସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ
କର୍ତ୍ତୃକ
ଅମିତ୍ରାକ୍ଷର ଛନ୍ଦରେ ଅନୁବାଦିତ ।

ବିଜୟିନୀ ଇଲେକ୍ଟ୍ରିକ ମେଶିନ ପ୍ରେସରେ
ଶ୍ରୀଦୀନବନ୍ଧୁ ଗଡନାୟକଙ୍କ ଦ୍ବାରା ମୁଦ୍ରିତ ।

BAMRA

1911

# ଭୂମିକା ।

ମହାକବି ବାଣଭଟ୍ଟ ବିରଚିତ " କାଦମ୍ବରୀ " ଗ୍ରନ୍ଥର ପ୍ରଥମାଂଶ ମତ୍କର୍ତ୍ତୃକ ଅନୁବାଦିତ ହୋଇ ପ୍ରକାଶିତ ହେଲା । କାଦମ୍ବରୀ-ଭାଷା ବର୍ଣ୍ଣନାଗୁରୁସି, ଅଳଂକାର ଓ ସମାସ ବାହୁଲ୍ୟରେ ଅତି ଉପାଦେୟ ଗ୍ରନ୍ଥ । ଉତ୍କଳ ଭାଷାର ଉପଯୋଗି କରି ମୂଳ ଗ୍ରନ୍ଥର ସେହି ଉପାଦେୟତା ରକ୍ଷା କରିବା ନିମନ୍ତେ ଯତ୍ପରୋନାସ୍ତି ଚେଷ୍ଟା କରାଯାଇଅଛି । ତହିଁର କୃତିତ୍ୱ ନିରୂପଣଭାର ପାଠକମାନଙ୍କ ଉପରେ ନ୍ୟସ୍ତ । କବିତାର ସୌନ୍ଦର୍ଯ୍ୟ ଓ ସାହିତ୍ୟର ଉତ୍କର୍ଷସାଧନ କରିବାକୁ ହେଲେ ଅଳଂକାର ଓ ସମାସ ବାହୁଲ୍ୟ ଆବଶ୍ୟକ । ସେହି ଅଳଂକାର ଓ ସମାସ ବାହୁଲ୍ୟ ଦ୍ୱାରା ଉତ୍କଳ ସାହିତ୍ୟକୁ ସଜ୍ଜିତ କରିବା ଏହି ଅନୁବାଦର ଅନ୍ୟତମ ଉଦ୍ଦେଶ୍ୟ ।

ବର୍ତ୍ତମାନ ଏହି ଅନୁବାଦିତ କାଦମ୍ବରୀ ଗ୍ରନ୍ଥର ପ୍ରଥମଖଣ୍ଡ ଉତ୍କଳ ସାହିତ୍ୟସେବି ପାଠକମାନଙ୍କର ନିକଟରେ ଆଦୃତ ହେଲେ କାଦମ୍ବରୀର ଅପରାଂଶ ପ୍ରକାଶ ବିଷୟରେ ସଚେଷ୍ଟ ହେବାର ବାସନା ରହିଲା ।

ଇତି । ପ୍ରଣେତା

# ପିତଗୌ !

ଦେବ !

ମାତୃହୀନ ଅନ୍ଧମୁଁ , ତବକୃପା ବିନା
ନଥାନ୍ତା ଏ ଦେହ ମୋର , (ପୁଣି) ଜ୍ଞାନର ପ୍ରକାଶ;
ଅଜ୍ଞାନ - ଅନ୍ଧାରେ ମୋର ପ୍ରଭାକର ତୁମ୍ଭେ,
ଦେହରକ୍ଷା ପାଇଁ ପୁଣି ମୃତ-ସଞ୍ଜୀବନୀ
ଅର୍ପୁଅଛି ପିତଃ ତବ ଶ୍ରୀପଦ-କମଳେ
ଭକ୍ତିଭାବେ ଗୀତକାବ୍ୟ ଗୃଥିଲି ଯାହିକି ;
ଦୟାକର :--

ମା !

ନାହିଁ ମୋର ମନେ , ପୁଣି ଡାକିନାହିଁ ତୋରେ
"ମା !" ବୋଲି , ଦୁର୍ଲ୍ଲଭ ସଦା ମୋହର ଭାଗ୍ୟରେ
ମା , ଏ ମୁଖେ ହଳାହଳ ଏ ଅମୀୟ ବାଣୀ ;
ତୋଷିବାକୁ ଦୁଃଖମୟ ଜୀବନ ମୋହର,
ଡାକୁଥିଲି ତବ ନାମେ , ସ୍ନେହେ ମାମା ! ବୋଲି
ଉଷର ହୃଦୟେ ମୋ ଦିବ୍ୟ ଶାନ୍ତ-ସ୍ୱରୂପିଣୀ
ମନୋଜ୍ଞା , ହୋଇବି ଲତା , ଜନନୀକୁ ମୋର ।
ମା ! ହଳାହଳ କେବେ ନୁହେ ଏ ବନ୍ଧେ ପୋଷକ,

ମଉଳିଲା ଅକାଳରେ ଯେ ଗର ପରଣେ
ପର୍ଣ୍ଣତୋଷିଣୀ ରମ୍ୟା କୁସୁମକଳିକା;
ଅଧିଷ୍ଠିତା ଥିଲ ସେହି ତବ ଶ୍ୟାମକ୍ରୋଡ଼େ;
ପାଉରଖ ଆଜ ତବ ତନୟ ପାଇଁକ
ଭେଟିବ ଯେ କାଲେତବ ଶାନ୍ତିମୟ ଧାମ ;
ଆଶୀଷ ମା ! ଯୋଗାସଙ୍ଗେ ତୋହର ତନୟେ
ମହାଜ୍ୟୋତିଷ୍ମତି ! ଦେବୀ ସ୍ୱର୍ଗସିଂହାସନୁଁ;
ଫଳୁ ତବ ବାଣୀ, ମାତଃ ! ଏ ଦୁଃଖୀ ଜୀବନେ
ଦୈବବାଣୀ ସମ; ଘେନ ଭକ୍ତିଉପହାର ।

ତୁମ୍ଭର
ଟୀକାସୂତ ବାବୁ

# କାଦମ୍ବରୀ ।

## ପ୍ରଥମଖଣ୍ଡ ।

ପ୍ରସନ୍ନେ ବରଦେ ଦେବି ! ଉତ୍କଳ-ଭାରତି !
ଉତ୍କଳ- କମଳାକର-ପୁଣ୍ଡରୀକ ବୃନ୍ଦେ
ଉଦ୍ଭାସିତ ତବମୂର୍ତ୍ତି, ( ତବ ) ବୀଣାର ଝଂକୃତ
ଦିଗନ୍ତ—ବ୍ୟାପିନୀ ପୁଣ୍ୟ ଉତ୍କଳ-ଗଗନେ ;
ତବ କର ପୋଥି ( ଦେବି ! ) ଥୁଅ ଉତ୍କଳ-ମଣ୍ଡପେ,
କିନ୍ତୁ ଗାଇବାକୁ ତହୁଁ ନୁହଇ ଭାଜନ ;
ଗାଇବ ଅମିତାକ୍ଷରେ, କବି-କୁଳ-ଗୁରୁ
ବାଣ ଭଟ୍ଟ ଗଦ୍ୟ-ମୟ-ପ୍ରବନ୍ଧ-ଲେଖକ-
କାଦମ୍ବରୀ, ଗୀତି କାବ୍ୟ, ଦୟା କର ସତି!
ନରପତି-ନିର-ସମର୍ଚ୍ଚିତ – ଶାସନ
ଭୂପତି ଶୂଦ୍ରକ ନାମା ବଦାନ୍ୟଶେଖର
ରମ୍ୟା ବେତ୍ରବତୀ—ତଟ-ବିଦିଶା ନଗରେ ।

ଥିଲେ ଅଧିଷ୍ଠିତ ଦିବ୍ୟ ରାଜସିଂହାସନେ ।
ଉଦଧି-ମାଳ-ମେଖଳା ଭୂମି ଅଧିପତି ,
ଅପର ପାକଶାସନ ଯେ ଦୁଷ୍ଟ ଶାସନେ ;
ପ୍ରତାପାନୁରାଗ-ନତ ସମସ୍ତ ସାମନ୍ତ ;
ମନ୍ମଥ-ବିଜୟୀ ଯେହ୍ନେ ମନ୍ମଥ ବିଜୟୀ ;
ଶଙ୍ଖ ଚକ୍ର ସୁଲକ୍ଷିତ କର-କମଳରେ
ସାର୍ବଭୌମ ଅରିନ୍ଦମ କେଶବ ପରାଏ ;
ଅପ୍ରତିହତ ଶକତି ଯେହ୍ନେ କାର୍ତ୍ତିକେୟ ;
ଅଥବା ସ୍ୱୟମ୍ଭୂ ? ଯେଣୁ ରାଜନ୍ୟ-ମଣ୍ଡଳ
ବିମାନତ ହୋଇଛନ୍ତି ପ୍ରଚଣ୍ଡ ପ୍ରତାପେ ;
ସଚେତ ଜଳଧି? ଯେଣୁ ଲକ୍ଷ୍ମୀଙ୍କ ବସତି;
( ରତ୍ନପୂର୍ଣ୍ଣ ରାଜକୋଷ ରତ୍ନାକର ପରି ) ;
ଭଗୀରଥ-ପଥ-ଅନୁସାରୀ ଗଙ୍ଗାପରି ,
ସୂର୍ଯ୍ୟବଂଶ ଧ୍ୱଜ ଯେଣୁ ପଥ ପ୍ରବର୍ତ୍ତକ ,
ଭବ ସମ ପ୍ରତିହନ ଉଦ୍ଧତ-ସମୃଦ୍ଧି ;
ପଦଚ୍ଛାୟା ତଳେ ଯାର ସମସ୍ତ ଭୁବନ
ଆଶ୍ରୟ ଭଜଇ , ଯଥା ମେରୁ ପାଦାନ୍ତକେ ;
ଦାନବାରି — ଅର୍ଦ୍ଧକର ଦନୁଜ ପରାଏ
ପ୍ରଥିତ ମହତ ଯଶା ସେହି ନରରାଣ ;
ଅଦ୍ଭୁତ ବପୁରେ ସଦା ହୃଷ୍ଟ ମାନସ ;
ଅଶ୍ୱମେଧ ରାଜସୂୟ ଯାଗ ଅନୁଷ୍ଠାତା
ପଞ୍ଚାଶାବ୍ଦ ସେହି ଆଦର୍ଶ ନରେନ୍ଦ୍ର,

ନୃତ୍ୟ ଗୀତ ଚତୁଃଷଷ୍ଟି ସୁକଳା ନିପୁଣ
ଶୌର୍ଯ୍ୟ ବୀର୍ଯ୍ୟ ଆଦିଗୁଣେ ସଦା ଗୁଣବାନ ;
କାବ୍ୟାମୃତ ରସାଦର ଅଟନ୍ତି ଅଗମ ;
ସତ୍ପୁରୁଷ ମିତ୍ରବରେ ଉଦୟ ଅଚଳ ;
ଧୂର୍ତ୍ତକେତୁ ସମସ୍ତ ଦା ବଇରୀ ନାଶନେ ;
ସମାଜ ଗଠନ ପାଇଁ ସଦା ଧୁରନ୍ଧର ,
ରସିକ ଆଶ୍ରୟ ଦାତା , ପୁଣି ଧନୁର୍ଦ୍ଧର ;
ସାହସିକ ମଧ୍ୟେ ଯେହୁ ଧୈାରେୟ ନିଶ୍ଚୟ ,
ବୈନତେୟ ପରି ସେହୁ ବିନତାନନ୍ଦକ
ପଣ୍ଡିତ ମଣ୍ଡଳେ ପୁଣି ଯେ ଏକ ଧୁରୀଣ ;
ନୃପକୋଟି ମୋକ୍ଷଯୋଗେ ଅଥବା ଇଙ୍ଗିତେ
ପୃଥ୍ୱୀମସ , କୁଳାଚଳ—ଅଗାଧ—ଅଚଳ
ନିର୍ଜ୍ଜିତ କରିଲେ ସେହି ଶୂଦ୍ରକ ଭୂପତି ।
ସମଗ୍ର ଭୁବନ ଏକ ବିନ୍ଦୁରେ ଅସିମି
ନିର୍ଜିନ୍ କରିଲେ ଯେହୁ ଅଗାଧ ହୃଦୟ ,
ନରସିଂହରୂପେ ଦେବ ବାସୁଦେବ ଯଥା
( ତ୍ରିଭୁବନ ଆଚ୍ଛାଦିଲା ଯାଙ୍କ ପାଦଦ୍ଵୟ ) ।
ଅତି ଚିରକାଳୁଁ ମନ୍ଦ ନୃପତି ସମ୍ପର୍କେ
ଲଭିଥିଲେ ଯେ କଳଙ୍କ ପ୍ରଭୃତି — ସଦନେ
ଲଭିଲେ ସେ ଦିଗ୍ବିଜୟୀ ଅଗଣିତ-ଦମନ ,
ଅସିଧାରା ଜଳେ ସ୍ନାତ ପୂତ ରାଜଲକ୍ଷ୍ମୀ ।
ବହୁ ଗୁଣ ଯୁକ୍ତ ସେହି ଶୂଦ୍ରକ ଭୂପତି

ନବବସନ୍ତ ମନେ ଯାର ନ୍ୟାଯ୍ୟ ଧର୍ମ ଦମ ,
କୋପରେ କୃତାନ୍ତ ଯେହୁ ଅନ୍ତକକାରଣକୁ,
ପ୍ରସାଦେ ଧନଦ ପୁଣି ପ୍ରତାପେ ବହ୍ନିକ ,
ବଳେ ପ୍ରଭଞ୍ଜନ ପୁଣି ପ୍ରଜ୍ଞାରେ ଗୀଷ୍ପତି
ରୂପେ ଦେଖେ ଜିଣିଛନ୍ତି ମଦନ, ସବତା;
କୃପାଞ୍ଚଳେ ପୂର୍ଣ୍ଣ ସଦା ଲୋଚନ-ସାରସ
ଲକ୍ଷ୍ମୀଙ୍କ ବସନ୍ତ ; ବାଗ୍ମିପ୍ରବର ରସିକ ,
ସୁରନାରୀ-ପକ୍ୱବିମ୍ବ-ଲୋହିତ-ଅଧର
ଚୁମ୍ବିବାକୁ ଇଚ୍ଛେ ଯାର ମୁଖ ସୁଧାକର ।
ଏଣୁ ବସ୍ତୁରୂପ—ଅନୁକାରି ନରଗଣ
କୃମା ଭଗବତଙ୍କର ସବେ କି ସୋଦର ?
ମଦକଳକରୀ-କୁମ୍ଭ-ପାଟନ — ଗ୍ରନ୍ଥିତ-
ମୁକ୍ତାଫଳ - ଦନ୍ତୁରିତ—ଅସି ଅଲମ୍ଭନେ
ସୁଭଟ ଉର-କପାଟ କବଚଚ୍ଛିଦ୍ରିତ
ମଦ ମତ୍ତ ଦାନବାରି ଅତ୍ୱର ଫୁତ୍କାର—
ଅପାର-ଉଲ୍ଲଂଘ ଶୂରକାଂକ୍ଷିଣୀ ରାଜଶ୍ରୀ
ଅଭିସାରେ ଲଭିଲେ ଯେ ଦଗ୍ଧିକନ୍ଧୀଖାରେ ।
ପୁଣି ପତିସୋହାଗିନୀ ରିପୁ - ନାରୀକୁଳ
ବିରହ-ହୁତାଶ ଯାହା ଜଳଇ ଅନ୍ତରେ ,
କାରବନ୍ଧ ଚଉଗତ ବ୍ୟଚ୍ଛେଦ ପତିଙ୍କୁ
ନୟନି—ପ୍ରଭାପାନର ଦହେନ୍ତି ନରତେ ?
ଏକଛତ୍ର-ଅଧୀଶ୍ୱର ନ୍ୟାଯ୍ୟ – ଦଣ୍ଡଧର

ଯାହାଙ୍କ ଦୋର୍ଦ୍ଦଣ୍ଡବଳେ ଶତ୍ରୁମହୀ ଧରା ;
ମଖାଗ୍ନି ଉଦ୍‌ଭୂତ ଧୂମ- ଅନ ଅଶ୍ରୁପ୍ରାନ୍ତ
ନ ହୁଅଇ କେବେ ଯାଙ୍କ ଶାସିତ ସୁରାଷ୍ଟ୍ରେ ;
କଳଙ୍କ କେବଳ ମାତ୍ର କବଚେ କୃପାଣେ ;
ମାଳବ – ରମଣୀ - କୁଚ - ପୀଡ଼ନ - ଚଞ୍ଚଳ—
ତରଙ୍ଗିତ ବେତ୍ରବତୀ ସ୍ରୋତସ୍ୱତୀ ଯହିଁ
ଜଳ କର-କୁମ୍ଭଧୌତ ସିନ୍ଦୂର—ଅରୁଣା
ସମଦୃଶ୍ୟ ସନ୍ଧ୍ୟାଭ୍ରାନ୍ତି କରଇ କଳନା ;
କଳହଂସ କୁଳ କୋଳାହଳ ମୁଖରିତ—
ସେ ତଟିନୀ ତଟେ ରାଜେ ବିଦିଶା ନଗରୀ ।
ଶାସିତ ହୁଅନ୍ତେ ଧରା ଏକଚ୍ଛତ୍ର ତଳେ
ନିବର୍ତ୍ତିଲା ରାଜ୍ୟଭାର-ଚିନ୍ତା ମାନସରୁ ;
ଦ୍ୱୀପାନ୍ତର- ସମାଗତ ରାଜନ୍ୟ ମଣ୍ଡଳ
କିରୀଟ-କୋଟି – ଘଟିତ ରତ୍ନ-ଦୀପ ଯୋଗେ
ନୀରାଜନା କରି କାଞ୍ଚନଚରଣ ଯୁଗଳ
ପୂଜିଲେ , ପ୍ରବୁଦ୍ଧ ବର୍ଷୀୟାନ ମନ୍ତ୍ରୀଦଳ—
ପରିବୃତ ସାର୍ବଭୌମ ଅରିନ୍ଦମ ବୀରେ ।
ସମାନ ବୟସ ବିଦ୍ୟାଳଂକାର ଭୂଷିତ
ପ୍ରଗଲ୍ଭ ଶାସ୍ତ୍ରଜ୍ଞ ପୁଣି ବିକ୍ରମୈକରସ
ରାଜପୁତ୍ର ସବ ରାଜଦଣ୍ଡ-ନମ୍ରାନନ ;
ବିନୟ ଗୁଣ ନିପୁଣ ବୟସ୍ୟଙ୍କ ସଙ୍ଗେ ,
ବଢ଼ିଥିଲେ ବାଲ୍ୟାମୋଦେ ଯେମନ୍ତ ଶୈଶବେ ,

ତେଜିଲେ ତୃଣ ପରାଯେ ସ୍ତ୍ରୈଣଭାବ ଏବେ ,
କେବଳ ଜିଗୀଷା ଯେଣୁ ହୃଦସ୍ଥ ସମ୍ପତି ।
ମୃଗୟା ବିନୋଦେ ମୃଗ , ଶୂକର , ହର୍ଯ୍ୟକ୍ଷ ,
ମଦକଳ ଦନ୍ତାବଳ ଅବର ମହିଷ ,
ଶ୍ୱାପଦେ ସଂହାରି କଲେ ନିଃସତ୍ତ୍ୱ କାନନ ;
ପୁଣି କ୍ରୀଡ଼ା , ଶସ୍ତ୍ର , ଶାସ୍ତ୍ର କର ଆଲୋଚନା
ସମଧର୍ମ୍ମ ସୁହୃଦ୍‌ବର୍ଗେ ପରିବୃତ ହୋଇ
ଯାପିଲେ ଉଲ୍ଲାସେ କେତେ ଦିବସ ରଜନୀ ।

ଏକଦା ରାଜନ୍ୟ ମେଳେ ଆସ୍ଥାନ ମଣ୍ଡପେ
ବସିଥିଲେ ନୃପବର ପାରିଷଦ ସହ ;
ପସରୀ-ଅଚଳ-ଦେହ ଯେ କାଳେ ମିହିର
ନବୀନ-ନଳିନୀ-ଦଳ-ସମ୍ପୁଟ—ଭେଦନ ,
ଢାଳୁଥିଲେ ସ୍ନିଗ୍ଧଜ୍ୟୋତି ସଭାମଣ୍ଡପରେ ।
ବିଷଧର ବିଜଡ଼ିତ ଚନ୍ଦନ—ବଲ୍ଲରୀ-
ପରି ବାମେ ବିଲମ୍ବିତ- ଉଜ୍ଜ୍ୱଳ ଅସି
ଅଙ୍ଗନା ବିରାଜି , ରାଜ-ଅଙ୍କ-ବିରହିଣୀ ,
ଶାରଦୀୟ-କଳହଂସ-ଧବଳ ଅଂଶୁକା ,
ମନ୍ଦାକିନୀ-ଉନ୍ମଜ୍ଜିତ-ଐରାବତ-କୁମ୍ଭ-
ପରାଯେ ଚନ୍ଦନଲିପ୍ତ-ପୃଥୁଳ-ଉରଜା ,
ବେତ୍ରବତୀ ପ୍ରତିହାରୀ ରାଜାଙ୍କ ସମ୍ମୁଖରେ ,
ପ୍ରବେଶ ହୁଅନ୍ତେ , ଜାନୁପାତ କ୍ଷିତି ତଳେ ,
ନମିଲା , କହିଲା ପୁଣି ବିନମ୍ର- ବଚନେ ;

"ଦେବ !
ସ୍ୱର୍ଗ-ସମାକ୍ରାନ୍ତି-ଭୂପ-ଦିଗନ୍ତ ତାପସ-
ଶତମଖ ଶାପେଁ ଚ୍ୟୁତ-ସ୍ୱର୍ଗଲକ୍ଷ୍ମୀ ସମ
ଅଗତା ଦକ୍ଷିଣା ପଥୁଁ ଚଣ୍ଡାଳ କନ୍ୟକା ;
ପଞ୍ଜରସ୍ଥ ଶୁକଧରୁ ତବ ଦରଶନେ
ଉପସ୍ଥିତା ଦ୍ୱାରେ ତବ ନୃପତିଭୂଷଣ !"
କୁତୂହଳାକ୍ରାନ୍ତ ହୋଇ ନୃପତି ପ୍ରବୀର
ଆଦେଶିଲେ ଆସିବାକୁ ମାତଙ୍ଗ କୁମାରୀ ;
ଅଶନି-ବଧିତ-କୁଳାଚଳ-ମଧ୍ୟବର୍ତ୍ତୀ
ମେରୁସମ ନୃପବର ନୃପତି-ଗହ୍ୱରେ ;
ଦେଖିଲା ରୂପସୀ ଦୂରୁ, ଅଗ୍ରେ ସମାସୀନ
ମୌକ୍ତିକ-ଗ୍ରନ୍ଥିତ-କଳଧୌତ ସିଂହାସନେ ,
ବର-ହୁତାଶନ ଲଗ୍ନ-କୁସୁମ ଅଶୁଗ
ପଲ୍ଲବେ ଶୋଭନ୍ତି ଦେବ ଅଭରଣ ଯୋଗେ ;
ଇନ୍ଦ୍ରନୀଳ ମଣିମୟ ପ୍ରାସାଦ କୁଟ୍ଟିମ-
ମୟୂଖେ ଶ୍ୟାମାୟମାନ ନୃପତି-ନଖାଗ୍ର
ବହୁସନ, ଯେହ୍ନେ ନୃପ-ଚରଣ-ଲୁଣ୍ଠିତ
ପରାଜୟ-ଅନୁତପ୍ତ ନରପତି ଙ୍କର ,
କଣ୍ଠାପ ଉଚ୍ଛ୍ୱାସ ଯୋଗେ ଭଜେ ମଳିନତା ?
ବମ୍ପିତ-ଭାସ୍ୱର ତନୁ, ବମଳ କୁଟ୍ଟିମେ
ଦେଖି କୁମାରୀ ଚିନ୍ତା କରିଲା ମାନସେ :—
ପ୍ରତିବମ୍ବ ଛଳେ ଅବା ପ୍ରେମେ ବସୁମତୀ

କରିଛନ୍ତି ଧର୍ମଧ୍ୱଂସେ ହୃଦୟେ ନିହିତ ?
ନରପତି - ପ୍ରବୋଧନ ପାଇଁ ସେ ତରୁଣୀ
ପଙ୍କେଜ ସ୍ଥଳରେ ସଭା ମଣ୍ଡପ କୁଟ୍ଟିମେ
କମଳ କୋମଳ କରଧୃତ ବେଣୁ ଦଣ୍ଡ–
ଯୋଗେ ସଙ୍କେତିଲ ସେହି ନୃପତି ତତ୍ପୃଙ୍କୁ ;
ସତ୍ୱରେ ନୃପଙ୍କର ନୟନ- କୁମୁଦ
ଚପଳ — ବୈଭବ ନୃପ ମୁଖୁଁ ଅପସରି
ଅତ୍ରୋଲ୍ଲ ରମଣୀ —ମୁଖ—ପୂର୍ଣ୍ଣ ସୁଧାକରେ ,
ଅନଭ୍ୟସ୍ତ ଶବ୍ଦ ଯେହ୍ନେ କରଇ ଚକିତ
ଯୂଥପତି—ସମାଶ୍ରିତ ବନ୍ୟହସ୍ତୀ ଯୂଥେ ।
ସଞ୍ଚାରିଣୀ ଇନ୍ଦ୍ରନୀଳ-ପ୍ରତିମା-ପ୍ରତିମ
କୃଶୋଦରୀ, ଚିତ୍ତେଶ୍ୱର ଅବା ମଦନରଁ !
ଶ୍ୟାମା ପୁଣି ଶ୍ୟାମବର୍ଣ୍ଣା , ହର ହୁତାଶନ-
ଦହ୍ୟମାନ ଫୁଲଧନୁ ଧୂମ —ଧୋରଣୀରେ ,
ମଳିନବରଣା ଯେହ୍ନେ କାମ—ସୁହାଗିନୀ !
ରତି ଭଲେ ଅଙ୍କପାଲି ରୋଚନା—ତିଳକ
ଇଶାନୁସ୍ମରଣୀ କଦ୍ରତନୀ ବିଲୋଚନା
ଦେଖି କାତ୍ୟାୟନୀ ସମ ବହିଛି ସୁଷମା ;
କାଞ୍ଚୀଦାମ-ଆଲବାଲ ଲତାଲୋମ ଶ୍ରେଣି
ତରଲ ଯୌବନ ଜଳେ ସଦା ବିକଶ୍ୱର ;
ରକ୍ତାଂଶୁକେ ଆଚ୍ଛାଦିତ ସୁନୀଳ-ବସନା
କଳୁଅଛି ନୀଳୋତ୍ପଳ-ସ୍ଥଳି-ସନ୍ଧ୍ୟା ତପେ;

ଅକ୍ଷତ ରୂପ ସମ୍ପନ୍ନା ବନଭୂମି ସମ ।
ଅନୁଚର ସବର୍ଯ୍ୟ ଚଣ୍ଡାଳଦାରକେ
ଧନ୍ୟସ୍ତ କରନ୍ତି କଳଧୌତ—ପଞ୍ଜରକା,
ଅଗ୍ରେ ଯାଇ ବର୍ଷୀୟାନ ପାମ୍ବରମୁଦ୍ଧିକ
ଶୁକ-ପକ୍ଷଙ୍କ'ସ୍ଥା ଯୋଗେ ଯା ହେମ—ଶଲାକା
ମରକତ ମଣି ଦ୍ୟୁତି ବହନ୍ତି କରତେ ।
ପ୍ରତିହାରୀ ସଙ୍କେତରେ ନୃପତି ସତ୍ତମ
ଦେଖିଲେ ଦୂରରୁ ସେହି ମାତଙ୍ଗ କୁମାରୀ
ଚିନ୍ତିଲେ, ଅସ୍ଥାନେ କିଂପା ଏରୂପ ଲାବଣ୍ୟ
ସଷ୍ଟାଦିଲେ ବିଧି ? ଅବା କଳ୍ପନା-ତୁଳୀରେ
ରଚିଲେ କି କାନ୍ତିମତୀ ରୂପସୀ ଲଲନ ?
( କନମୁଁ ମାନସେ ଘୃଣା ଚଣ୍ଡାଳ ପରଶେ ? )
ନୋହିଲେ କି ସମ୍ଭବଇ ଏକାନ୍ତ-ବିଭବ ?
ଦୂର—ସ୍ୱର୍ଣ୍ଣ—କୁତ ଯେଣୁ କାନ୍ତ-ମ୍ଲାବକର ।
ପ୍ରଣମିଲା ରୂପବତୀ ରାଜାଙ୍କ ଚରଣେ
ଖେଦିଲା କାଳେ କର୍ଣ୍ଣ—ପଲ୍ଲବାବତଂସ
ଏକାଳେ ପୁରୁଷ ନେଇ ସେ ଶୁକ-ପଞ୍ଜର
ସମର୍ପିଲା ରାଜାଙ୍କର ଛାମୁରେ ସାଦରେ;
ପ୍ରଗଲ୍ଭେ ବିନମ୍ରେ ପୁଣି କହିଲା ସେ ଜନ-
"ଦେବ !
ସମସ୍ତ ଶାସ୍ତ୍ରଙ୍କ ପୁଣି ସୁକାଚ-କୁଶଳ
ପ୍ରଣୟ-କଳହ-ବୃଷ୍ଟି-କାମିନୀ-ପ୍ରମୋଦେ-

ଚତୁର ବୈଶମ୍ପାୟନ ଏଶୁକ ଶ୍ରମୁରେ-
ଅର୍ପିବାକୁ ସମାଗତା ଏଭର୍ତ୍ତୃଦାରିକା"
ସ୍ତଚାଙ୍କ ଯନ୍ତ୍ରଣ ଦେଖି ସେ ଶୁକଚତୁର
ଅଶୀଷିଲ ସ୍ପଷ୍ଟାକ୍ଷରେ ମଧୁର ବଚନେ ;
ଶୁଣି ଶୁକ ମୁଖୁଁ ନୃପ କମ୍ପିଲ ଭ୍ରରତୀ
ସଚନ୍ତକେ ଚକ୍ଷିପିଲେ ପ୍ରବୀଣ ମନ୍ତ୍ରୀଙ୍କୁ
( ଯିଏକେ ଯେହ୍ନ ସୁରଗୁରୁ, ବଦ୍ୟେ ବର୍ଷୀୟାନ )
'କୁମାର ପାଳିତ' ନାମ ଜାତ ଧୂରନ୍ଧର

" ମନ୍ତ୍ରିନ୍ !
ଅହାର , ମୈଥୁନ, ନିଦ୍ରା , ଭୟ ନାସଜ୍ଞାନ
ଯେ ଶୁକପୋତକେ, ଦେଖ, ପ୍ରଗଳ୍ଭ ବଚନେ
ବିହଙ୍ଗମ ହେଲେ ସୁଦ୍ଧା ବର୍ଣ୍ଣ ଉଚ୍ଚାରଣେ
ସ୍ୱରେ ପୁଣି ମଧୁରତା ଅଶୀଷେ ଅବର" ।
ବ୍ରହ୍ମାଙ୍କ ବଚନେ ମନ୍ତ୍ରୀକୁମାର ପାଳିତ ,
କହିଲେ ସସ୍ମିତେ ପୁଣି ବିନମ୍ର ବଚନେ
" ନହଇ ବିଚିତ୍ର ଯେଣୁ ଜନ୍ମାନ୍ତର ଜ୍ଞାନ ,
ସଂସ୍କାର-ଅଧୀନ ଦେବ ! ହୋଇ ଉଦ୍ବୋଧିତ
ସ୍ମୃତିପଥ-ସମାଶ୍ରିତ ହୁଏ ଶ୍ରୁତକଥା ,
ହବ୍ୟବାହ - ଶାପ ଯୋଗୁଁ ବିକଳିତ-ଛନ୍ଦ-
ଶୁକ ଦନ୍ତାବଳ ଏବେ ଲଭନ୍ତୁ ଜଡ଼ତା" ।
ଏ କାଳେ ଘହହ ନାଦ ମଧ୍ୟାହ୍ନ ସଙ୍କେତେ
ତାର ଶଙ୍ଖଧ୍ୱନ ସହ ଶୁଭିଲ ମଣ୍ଡପେ ;

ଅଶୀତ ଅମୃତମଣ୍ଡି ମଧ୍ୟମ ଅରୂଢ଼
ଜାଣି, କ୍ଷିତିପତି ଅଗୁ ବେଢ଼ିଲେ ମଣ୍ଡପ ;
କଦାସ୍ତ ଲଭିଲେ ସିଦ୍ଧ ଅଶ୍ରିତ ଭୂପେ ;
ଇଙ୍ଗିତେ ବେତ୍ରଧାରିନ ସଙ୍ଗ-ଅନ୍ତଃପୁରେ
ପରିଚର୍ଯ୍ୟା ପାଇଁ ଜାତ ହେଲ ତତକ୍ଷଣେ ;
ଦେବୀ ଅଗ୍ରହଣୀ ସେହି ବିହଙ୍ଗରାଜକୁ,
ମଦମତ୍ତ ପରଭୃତ-ନୟନ-ଉଜ୍ଜ୍ୱଳ
କଷାୟ ମଧୁର ଦ୍ରବ୍ୟ ଜମ୍ବୁଫଳ-ରସେ ,
ପୁଣି ସିଂହ-ହତାହତ ମାତଙ୍ଗ-କୁଳକା-
ବିନିଃସୃତ ରୁଧିରାର୍ଦ୍ର ମୋତି-ଦ୍ୟୁତି-ପ୍ରଭ
ଖଣ୍ଡିତ ଦାଡିମ-ବୀଜ, ପଟୋଲମ ଫଳେ
ତୋଷିଲେ ସାଦରେ ଦାସୀ ବନ୍ଧୁସଦ୍ମ ହସ୍ତେ ।
ସ୍ୱର୍ଣ୍ଣବେଣ-ସମାଶ୍ରୟି ଅବନତ ଦେହ
ଜରା-ଧବଳିତ-ମୌଳି ଜରଦ୍ବଂଶ ପରି
କୁମନଦକ୍ଷାର ବୃଦ୍ଧେ ପଞ୍ଜର-ହସ୍ତରେ
ପଠାଇଲେ ଶ୍ରୀ ଗୁମ୍ଫୁକୁ ଶୁଦ୍ଧାନ୍ତ ଚାରିଣୀ ।
ଏ କାଳରେ କ୍ଷିତିପତି ଶୟନ ମଣ୍ଡପେ
ବସିଥିଲେ ଦୁଗ୍ଧଫେନ-ନିଭ ତଳ୍ପୋପରି
ଜିଜ୍ଞାସିଲେ ଶୁକବରେ, ସୁଧୀରେ ସାଦରେ-
" କେଉଁ ସ୍ଥାନେ ଜନ୍ମ ତବ ? କେବା ତବ ପିତା?
କିପରି ଲଭିଲ ? ଏହି ବଚନ ପଟୁତା ,
ଶୁକବର ! କିପରି ବା ଚଣ୍ଡାଳ ହସ୍ତରେ

ବୋଲଇ ପଞ୍ଜର-ବନ୍ଧ ? ତେଜି ସ୍ୱାଧୀନତା,
କହ ଗୋଟି ଗୋଟି ଶୁକ ! ଜବର୍ଣ୍ଣୁ ସ୍ୱଶସ୍ୟ”
ସଜନସ୍ତେ, ସାର୍ବଭୌମ କୌତୂହଳ ଜାଣି
ବୃତ୍ତ କରଇଲା ଶୁକ ଉପାଖ୍ୟାନ ଛଳେ ।

ଭାରତ-ରସନା-ନଭ ବିନ୍ଧ୍ୟ ମହାଟବୀ,
ବନ କରିଯୂଥପତି-ମଦଜଳ – ସେକ-
ସମ୍ବର୍ଦ୍ଧିତ ବିକସ୍ୱର ପାଦପ ଯହିଁରେ
କୁସୁମିତ ସୁଶୋଭିତ – ଉନ୍ନତ ଶିଖର
ତାରାଛନ୍ନ ଗଗନକୁ କରଇ କଳନା ;
ବସନ୍ତ ଆଗମେ ଯହିଁ ନବ କିଶଳୟ
ବ୍ୟୋମ-ସଞ୍ଚାରିଣୀ ବନ ବିଦ୍ୟାଧରୀ-ପାଦ —
ଅଲକ୍ତେ ରଞ୍ଜିତ ପରି ଦିଶଇ ସୁନ୍ଦର ।
ଉପାନ୍ତେ ଦଣ୍ଡକାରଣ୍ୟ ଭୁବନ ବିଦିତ
ପୂର୍ବ ସାଗର-ଗାମିନୀ ଗୋଦାବରୀ ତୀରେ
ବିରାଜେ ଆଶ୍ରମ ମୁନି କୁମ୍ଭଯୋନିଙ୍କର
(ଦକ୍ଷିଣାଶାବଧୂ—ମୁଖ-ତିଳକ ସମାନ,
ଶାରଦୀୟା ଚନ୍ଦ୍ରିକା ଜଳଦେ ଯା ତେଜେ) ;
ମଖାଗ୍ନି-ଉଦ୍ଭୂତ-ଧୂମ ହୋମାଗ୍ନି କୁଣ୍ଡରୁ
ଚତୁର୍ଦ୍ଦିଗେ ପୁଞ୍ଜୀଭୂତ କପୋତ ଛବିଳ ;
ସନ୍ଧ୍ୟାତପ ବିଭୂଷିତ ପ୍ରତୀଚୀ ବନାଳି-
ପରିଷ୍ୱେ ତାପସ ବନ ଗୈରିକ ବସନେ ;
ଭଗବତୀ ଲୋପାମୁଦ୍ରା ପତିସ ଧର୍ମ୍ମିଣୀ

ସମ୍ମୂର୍ଚ୍ଛିତ କରିଥିଲେ ଯେ ବକ୍ଷେ ବାଜିଲେ
ରାମ-ତୀକ୍ଷ୍ଣ ଶର-ନିପାତିତ ସ୍ୱର୍ଣ୍ଣ ଚର —
ବହଳ ରୁଧିର-ସିକ୍ତ ଆବାଳ ଯୋଗୁଁ କି
ରାଗାନୁବନ୍ଧେ ନିର୍ଗତ ପାଟଳ ପଳାଶ
ବହୁଳିତ ବିଭୂଷିତ କରନ୍ତି ବନକୁ ;
ସତୀ-ମୌଳିମଣି ଦେବୀ ରାମ ସୁହାଗିନୀ
ତୋଳୁଥିଲେ ଯେ କାଳରେ ବନ୍ୟପୁଷ୍ପରାଜି
ପବିତ୍ରୀ ଉଷା-ଅରୁଣ-ଶ୍ରୀକର ପରଶେ
ରଞ୍ଜିଲବ କିଶଳୟେ ଏମନ୍ତୁଲ ରାଗ ?
ଯେଣୁ ସତ୍ୟବ୍ରତ ରାମ ପ୍ରତିଜ୍ଞା ପାଳନେ
( ପିତୃଆଜ୍ଞା ପାଳନରେ ଯେ ଏକ ଧୁରୀଣ )
ଦଶମୁଖ-ରାଜଲକ୍ଷ୍ମୀ ବିଭ୍ରମ ବିନାଶୀ
ମୈଥିଳୀ ସହିତେ ପୁଣି ସୌମିତ୍ରି ଅନୁଜେ
ପରିବୃତ ହୋଇ ଚୀର କଷାୟ ବସନେ
କୁଟୀର ବିରଚି ଏଥି ଥିଲେ ଦାଶରଥି ;
ଅଦ୍ୟାପି ସେ ବନେ ଛନ୍ତି ଗଳିତ ବିଷାଣ
ମୈଥିଳୀ ପାଳିତ କରି ଶାର୍ଙ୍ଗ-କୃଷ୍ଣସାର ,
ମୁଞ୍ଚନ୍ତି ଲୋତକ ପୁଣି ତ୍ୟଜନ୍ତି କବଳ
ଶୁଣନ୍ତି ଯେ କାଳେ ନବ ଦମ୍ଭୋଳି-ନିର୍ଘୋଷ
ସ୍ୱର ସେହି ଶତମଖ-ଅସ୍ତ୍ର—ବିଜୟୀ —
ବ୍ରହ୍ମାସ୍ତ୍ର ବିବର ବ୍ୟାପି କୋଦଣ୍ଡ—ଟଙ୍କାର
ଚାହିଁ ଶୂନ୍ୟମନେ ଅଶ୍ରୁ-ଲୁଳିତ-ଲୋଚନେ;

କୁଟିଳ କପଟୀ ଏଥି ମାରୀଚ ମାୟାବୀ
ଭସ୍ମାବୃତ ବହ୍ନିସମ , କନକ – କୁରଙ୍ଗ
ମାୟାଜାଲେ ଦେବଦ୍ରୋହୀ ଛଳିଲା ଜାନକୀ;
ଜଗତକାମିନୀ ଯହିଁ ଅଦ୍ୟାପି ଉତ୍କଣ୍ଠ-
ଭରି ବାଲ୍ମୀକି ଚିତ୍ରେ ଜନକ ତନୟା
ମୂର୍ତ୍ତିମତୀ ସର୍ବେ ଭାବୁକେ ଦେଖନ୍ତି ଆଗ୍ରହେ ।

ସେ ଛପିନେ ବନଶ୍ରୀ-ବିଳାସ-ଦର୍ପଣ
ପମ୍ପାନାମେ ପଦ୍ମାକର ବିସ୍ତରେ ବିମଳେ ;
ଶବର କାମିନୀ କୁଚ-କଳଶ—ଲୁଣ୍ଠିତ—
ବିକଚ-କମଳ-ମଧୁ ନିସ୍ୟନ୍ଦ-ଚନ୍ଦ୍ରକ
ମାର୍ତ୍ତଣ୍ଡ ପରଶ ଶଙ୍କା ଯହିଁ ଅସ୍ପୃଷ୍ଟା ;
ସୁବିସ୍ତୀର୍ଣ୍ଣ ଜଳରାଶି ଦିଗନ୍ତ—ବିସ୍ତାରି
ଅମ୍ବୁରାଶି—ମଧ୍ୟ ପ୍ରାନ୍ତେ ପ୍ରମତ୍ତ କାଦମ୍ବ -
ଦମ୍ପତି ସଙ୍କୁଲେ ପୁଣି ସଦା ମୁଖରିତ

ପୁଲିନ ବୃକ୍ଷକୁମାରୀ—ଉରଜ-ଚନ୍ଦନ—
ଧୂଳି-ଧବଳିତ-ଭଙ୍ଗେ ଅପୂର୍ବ ସୁନ୍ଦର ,
ଜଳକ୍ରୀଡା—ସୁହାସିନୀ ବନଦେବୀ କୁଳ-
ଶ୍ରୀଅଙ୍ଗ—ପରଶେ ଯାର ଦିବ୍ୟ ଅମ୍ବୁରାଶି
ସୁଶୋଭିତ , ସୁରଭିତ ପଙ୍କଜ-ପରାଗେ ;
ପୁଲିନ-ଆଶ୍ରିତ-ତରୁ ଅସାର—ଉପେକ୍ଷି
ନୀରୋଦ୍ଭିତ-ସମୁଡ୍ଡୀନ ସାରସ-କାଦମ୍ବ
ନିରେଖି , ଡାକିବାକୁ ଆଉ ଜଳ ବିହଙ୍ଗମ—

ପକ୍ଷପୁଟ-ବିନିଃସୃତ ଜଳଧାର ବେଗେ
ପଲ୍ଲବିତ ପୁଷ୍ପବନ୍ତ ହୁଅନ୍ତି ଅକାଳେ ;
ଅବତୀର୍ଣ୍ଣ-ଅମ୍ବୁଧାର-ବାରିଦ - ସମାନ
ବହଳ-ତମାଳ-ମ୍ଳାନ ବନ କରିଯୂଥେ
ସନ୍ତତ ଅପୀତ ଯାର ନିର୍ମଳ ସଲିଳ ;
ପ୍ରଫୁଲ୍ଲ-କୁବଳୟ- ଭ୍ରମ-ଶ୍ୟାମ-ନିସ୍ତବ୍ଧ
ରଥାଙ୍ଗ-ମିଥୁନ ମୂର୍ତ୍ତିମନ୍ତ-ରାମଶାପ—
ପରସ୍ପରେ ସେ ସରପ୍ରାନ୍ତେ ବିହରନ୍ତି ମୁଦେ ।
ସେ ସର-ପଶ୍ଚିମ-ତଟରେ , ବୃଦ୍ଧ ରଘୁବୀର—
ବିକ୍ରମ-ପରୀକ୍ଷା-ସାକ୍ଷୀ ଜୀର୍ଣ୍ଣ ସପ୍ତତାଳ-
ଉପାନ୍ତେ ବସିଛି ତଟ ଶାଲ୍ମଳୀ ପାଦପ ;
ମଦୋତ୍କଟ ଦନ୍ତୀନ୍ଦ୍ର-ଶୁଣ୍ଡ ଦଣ୍ଡୋପମ
ଦ୍ରୁମ ପୁଣି ଦୀର୍ଘକାୟ ଜରଦନ୍ତଗରେ
ବେଷ୍ଟିତ ପାଦପ ତଳ ଆଲବାଳାଶ୍ରିତ ;
ତୁଙ୍ଗ ସ୍କନ୍ଧେ ବିଲମ୍ବିତ ଉରଗ-ନିର୍ମୋକ
କଳୁଅଛି ଉତ୍ତରୀୟ ଧବଳ ଅଂଶୁକ ;
ଧମନୀ-ସମାନ ଲତା-ବେଷ୍ଟିତ ଶରୀର ;
ପୁରାଣ ପାଦପ ଅବା ପତନ-ଭୟରେ
ଗଗନରେ ସ୍କନ୍ଧ-ଲଗ୍ନ ଶାଖା-ପ୍ରସାରଣେ ?
ପ୍ରଳୟ କାଳ ତାଣ୍ଡବ-ପ୍ରସାରିତ ଭୁଜ
କଳ୍ପ ନଟ ଚୁମ୍ବିବାକୁ ସତେକି ଉଦ୍ୟତ ?
ଉତ୍ସୃତ ପରିପୀତ-ସାଗର-ସଲିଳ

ଗଗନ ତଳ—ସଞ୍ଚାରୀ ପକ୍ଷରଥ ପରି
ଶାଖାନ୍ତେ ବିଲମ୍ବମାନ-ଜଳଦ ପଟଳ
ଅଦ୍ରିକରେ ଉତ୍କ୍ଷିପ୍ତ ଅମ୍ବରସ୍ଥଳସ ।
ପ୍ରାଚୀ-ଅଭିମୁଖି ପୁଣି ଉର୍ଦ୍ଧ୍ୱାକ୍ତ , ବଶ୍ରାନ୍ତ
ରବି-ରଥ-ତୁରଙ୍ଗମ-ଘୋଣା ପ୍ରପତିତ
ବିଷଦ-ଫେନପଟଳ-ସମ ତୁଳାରାଶି
ସୁଶୋଭିତ କରଇସେ ଶାଲ୍ମଳୀ ଶିଖରୁ ।
ବନ-କରି-ଗଣ୍ଡ-କଣ୍ଡୂୟନ-ଲଗ୍ନ-ମଦ—
ବିଲୀନ-ମଧୁପ ମାଳା ସୁଦୃଢ଼-ନିଗଡେ
ବନ୍ଧନେ-ନିଶ୍ଚଳ କିବା ପୁରଣ-ପାଦପ ?
ଯା କୋଟରୋଦରେ ପୁଣି ପଲ୍ଲବ-ଅନ୍ତରେ
ସ୍କନ୍ଧ ସନ୍ଧି-ବନ୍ଧେ , ଜୀର୍ଣ୍ଣ ବଲ୍କଲ-ବିବରେ
ନାନାଦେଶୁଁ ସମାଗତ ବିହଙ୍ଗ ନିଚୟ
ନିର୍ଭୟେ ଅନନ୍ତ ରଚି ଆପଣା ନୀଡ଼କୁ ।
ପତ୍ରର୍ଷି ଜହିଲେ ସେହି ମହାଦ୍ରୁମ ଶାଖା
ଅବିରଳ ସୁକୋମଳ ସ୍ନିଗ୍ଧନୀଳ ଶ୍ୟାମ ।
ଆହାର ସଞ୍ଚୟ ପାଇଁ ଯେବେ ଶୁକକୁଳ
ନୀଡ଼ ତେଜି ଶୂନ୍ୟମାର୍ଗେ ଯାନ୍ତି ନାନାଦେଶେ
ବିଡ଼ମ୍ବିତ କରି ତହୁଁ ପକ୍ଷ-ପନ୍ତି-ଯୋଗେ
ସଞ୍ଚାରିଣୀ ଶ୍ୟାମଚ୍ଛବି-ମାରକତ-ସ୍ଥଳୀ ।
ନାନାବର୍ଣ୍ଣେ ସୁରଞ୍ଜିତ ଇନ୍ଦ୍ରଚାପ ସମ
ପଂକ୍ତି ଧରି ବର୍ଷୋତ୍ସବେ ଯେକାଳେ ବିହଙ୍ଗେ

ମାର୍ତ୍ତଣ୍ଡ-କର-ପ୍ରକର-ପ୍ରତାପ-ତାପିତ
ଅଧୋମୁଖ, ପକ୍ଷପୁଟେ ବିଶ୍ରାନ୍ତ ମଧ୍ୟରେ ;
ସେ କାଳେ ବାସବ-ମଦମତ୍ତ-ଦନ୍ତାବଳ—
ଉନ୍ମୂଳିତ , ଧ୍ୱାଗଳଗ୍ନ ବ୍ୟୋମ-ତରଙ୍ଗିଣୀ—
ପଦ୍ମିନୀ-ଘଟିଲ ଶଙ୍କା ମନେ ଉପୁଜାଏ ।
ଆହାରନ୍ତେ ବାହୁଡଲେ ଦନାନ୍ତେ କୁଳାୟେ
ନାନା ଫଳ ରସେ ପୁଣି କଳମ ଉହ୍ଲରେ
ଚରଣ ରୁଧିରାରୁଣ ଦ୍ୱୀପି - ନଖ-କୋଟି—
ପାଟଳ ସ୍ୱଚଞ୍ଚୁପୁଟେ ନୋଠାନ୍ତ ଶିଶୁଙ୍କୁ
ଅପତ୍ୟାନୁରାଗେ ତୋଷି ଯାପନ୍ତି ଶର୍ବରୀ ।
ସେ ବୃକ୍ଷ ଜୀର୍ଣ୍ଣ କୋଟରେ ମୋ ବୃଦ୍ଧା ଜନନୀ—
ସଙ୍ଗେ ପିତା, ଜାତ ରତ ଅନ୍ତିମ ବୟସେ ,
ପୋଷିଥିଲେ ମୋତେ ଆହା! ବାସୁଲେବ ଏକାକୀ ;
ହେଲି ଯେଣୁ ମାତାଙ୍କର ଜୀବନ ଉଗାର ;
ପ୍ରସବ ବେଦନା ସହି ନପାରି ଜନନୀ
ତେଜିଲେ ଏମର୍ତ୍ତ୍ୟଧାମ ମୋତେ ଏକା କରି
ଜାୟା-ବିୟୋଗ-ବିଧୁର ବୃଦ୍ଧତାତ ମୋର
ଶୁକ-କପୋତ-ମାୟୂର—ଜାତ-ନିପତିତ-
ଶାଳି ମଞ୍ଜରୀ , ତଣ୍ଡୁଳ କଣା, ତରୁ ମୂଳଁ
କୋମଳ-ଗଳିତଭିଲ—ପ୍ରସବ ବନ୍ଧନ—
ସମ କୋମଳ ହୃଷ୍ଟିଭ ଅଗ୍ରଚଞ୍ଚୁପୁଟେ
ଅଜଇ , ଅହାର ମୋତେ ଦେଇ ସମାଦରେ

ଭୁକ୍ତ ଅବଶେଷ ମାଂସ କରନ୍ତି ଭୋଜନ ।
ଏକଦା ପ୍ରଶାନ୍ତା ସନ୍ଧ୍ୟା ସାଗରକୂଳ—ତଟରେ
( ପଦ୍ମ-ମଧୁ-ରକ୍ତ—ପକ୍ଷସମ୍ପୁଟ ପୂରଣ
ରାଜହଂସ ଶୁଭ୍ର ଯଥା ସ୍ୱର୍ଣ୍ଣଦୀ ପୁଳିନ
ଧୀରେ ଧୀରେ ଅବତରେ ପଶ୍ଚିମ ସାଗରେ )
ଗମୁଥିଲେ କଳାନିଧି କୁମୁଦ ବାନ୍ଧବ ,
ରକ୍ତୋତ୍ପଳରାଜି ସମ ଦିକ୍ ଚକ୍ରବାଳଯୁ
ବିଚ୍ଛୁରିତ କରିଥିଲା ଗଗନସୀମାକୁ
ପୋତ ସଂଘାଳିକ ଅଣା କୌବେରୀ—ତିଳକ
ଧ୍ରୁବ ପରି ଜନି ତେବେ ସପ୍ତର୍ଷି ମଣ୍ଡଳ
ସନ୍ଧ୍ୟା—ବନ୍ଦାପନା ପାଇଁ ମାନସ ତୀରକୁ
ଗମିଲେ ପ୍ରଭାତି ଦିବ୍ୟ ଜ୍ୟୋତିର୍ମ୍ମ ଦୃଷ୍ଟିତା;
ଚ୍ୟୁତପତ ବିଘଟିତ ମୌକ୍ତିକ—ପ୍ରସୂତ—
ବିଗଳିତ ବିପ୍ରକୀର୍ଣ୍ଣ ମୁକ୍ତା—ଧବଳିତ
ଜଳଧି ପୁଳିନ ସମ ପ୍ରତୀଚୀ ଗଗନ
ବିଭାସିଲା, ପାଣ୍ଡୁବର୍ଣ୍ଣ ତୃଷାବଳି ଯୋଗେ ;
ଜୀବାଣୁ-ଗ୍ରଥିତ-ଦେହ ପ୍ରବାଳ—ଅରୁଣ
କୋମଳ ପଲ୍ଲବକରେ ସେକାଳେ ବିଟପେ
ଉଦ୍ଦେଶି ଉଦୟଗିରି—ଶିଖର—ମଣ୍ଡନ ,
ଅର୍ପୁଥିଲେ ହିମଧୌତ ବୃନ୍ତ ବିଗଳିତ
କୁସୁମ—ଅଞ୍ଜଳି ଦେବ ଦିବାକର—ପଦେ;
ବନଦେବୀ—ପୌଧାଯିତ ବନସ୍ପତି ଶାଖା—

ନୀଳୀୟମାନ—କପୋତ—ଛବି—ଅନୁକାରୀ
ରାସଭ—ରୋମ—ପାଣ୍ଡୁର ଧର୍ମ୍ମ—ଧ୍ୱଜ—ସମ
ହୋମାଗ୍ନି—କୁଣ୍ଡ—ଉତ୍ଥିତ ଧୂମ—ଲେଖାବଳୀ
ଅଗ୍ରହତ କରୁଥିଲା ତପୋବନ ସ୍ଥଳୀ ;
ବନ—ମହିଷ—ରୋମନ୍ଥ—ଫେନ—ବିନ୍ଦୁ-ବାହୀ
ଏକାଳରେ ସୁଶୀତଳ ପ୍ରଭାତ — ପବନ
ବନଚରୀ—ରତିଖେଦ-ବିନ୍ଦୁ ଅପହାରୀ,
କମ୍ପିତ ପଲ୍ଲବ—ଲତା—ନାଟ୍ୟ-ଦୀକ୍ଷାଗୁରୁ
ଭେଟୁଥିଲା ଅଳଙ୍କାରେ କୁସୁମ ଆମୋଦ ।
କମଳ-ବନ—ପ୍ରବୋଧ-ମଙ୍ଗଳ-ପାଠକ,
ଭ୍ରମର—ମାତଙ୍ଗ-ଗଣ୍ଡ-ଅଳଂକାର ରୂପୀ,
ବିକଶିତ କୁମୁଦିନୀ—ମକରନ୍ଦ ଯୋଗେ
ସମୃଦ୍ଧ ପକ୍ଷସମ୍ପୁଟେ ମିଳିନ୍ଦ— କଦମ୍ବ
ବନ୍ଦିଲେ ପ୍ରଗଲ୍ଭେ, ପୁଣି କଷାୟ ଲୋଚନ
ଉଷର — ଶଯ୍ୟା—ଧୂସର-କ୍ରୋଡ ରୋମରାଜି
ବନଚର କୁକ୍କୁଟର ଉତ୍କଟ କୁହାଟ
ମୁଖରିତ କରୁଥିଲା ପମ୍ପାସର — ତୀର ।
ଏକାଳେ ପଶ୍ୱରୀ ଭେଦି ଦେବ ଦିନମଣି
କ୍ରମେ ଆଶାମୁଖ ପୋଛି ଶ୍ରୀକର ପରଶେ
ସର-ତୀର-ତରୁଶାଖୀ ପୋଛିଲେ କାବର ;
ସେକାଳେ ଅଶ୍ରୁତ ପୂର୍ବ ମହା କୋଳାହଳ
ଗିରି-ଦରୀ-ସ୍ପୃଷ୍ଟ ପରି—ଗର୍ଜ୍ଜନ ଅବର

ମିଶି ତହିଁ ବନ୍ୟ-ଘୋଣି-ଘୋଣାର ଘର୍ଘର,
ଜନ୍ମାଇଲା ଚତ୍ୱରରେ ଅରଣ ବିଶେଷ ;
ସେ ଶବଦ ଶୁଣି ଶିହରିଲେ ବନଦେବୀ ;
ପ୍ରଳୟ-ସମୟ-ଶଂସୀ ସେ ଶବ୍ଦ ଝରିବ
ଶୁଣି, ତତ୍ର କମ୍ପିତ ଢାଳ-ପକ୍ଷ ପୁଟେ
ପଶିଲେ ଉର୍ଦ୍ଧ୍ୱବୃକ୍ଷେ ପ୍ରାଣୀବାର ଅଶେଷ ;
ଶୁଣିଲେ ମୃଗୟୁଙ୍କର ବିଷମ କୁହାଟ ;
ଶୁଭୁଥିଲା, "ଏହି ପଥ କରିଯୂଥ-ଧୃତ—
ବିଲୁଳିତ କମଳିନୀ-ସ୍ନିଗ୍ଧ ପରିମଳେ
ଆମୋଦିତ, ଏଣେ କ୍ରୋଡ଼ମୂଳ-ବିତାଡ଼ିତ
ଭଦ୍ରମୁସ୍ତା ରସାମୋଦ, ପୁଣି ଏହିସ୍ଥାନେ
କୁଞ୍ଜର-କଳଭ-ଭଗ୍ନ ଶଲ୍ଲକୀର ଗନ୍ଧ
ପ୍ରବାହିତ ହେଉଅଛି ମଳୟ ମାରୁତେ ;
ସ୍କନ୍ଦ-ବିଦାରି ବନ-ମହିଷ-ବିଷାଣ—
ବିକ୍ଷାଡ଼ିତ ବାଲ୍ମୂର-ଧୂଳି ଧୂସରିତ
ଧନ୍ୱନ୍ତର ତୃଣ—କୋଟି ଦେଖ ମଳୀମସ ;"
ମୃଗୟୁ-ବାହିନୀପତି-କାର୍ମୁକ ଟଙ୍କାର
କ୍ଷଣେ କ୍ଷଣେ କରୁଥିଲା ସ୍ତବ୍ଧ ବନସ୍ଥଳୀ ;
ଶୁଭୁଥିଲା ପୁଣି ସେହି ମୃଗୟୁ ଗର୍ଜ୍ଜନ,
ଜନ୍ମାଇଲା ମନେ ଯାହା ବିଷମ ଆତଙ୍କ ;
ସାରମେୟ ମୁଞ୍ଚିବାକୁ ନିଗଡ଼-ବନ୍ଧନୁ
ସେନାନୀ ଦିଅନ୍ତି ଆଜ୍ଞା ଅନୁଚର ଦଳେ,

ନର୍ଦ୍ଦିଲା ଯେଣୁ ସାଧ୍ୱୀ ମୃଗେନ୍ଦ୍ର ପୀଡ଼ିତ
ମଦୋତ୍କଟ ଯୂଥପତି ବାରଣ ବୃଂହିତ ;
କହିଲା ଗମ୍ଭୀରେ ପୁଣି ବାଗୁରିଙ୍କ ପ୍ରତି
" ଏହି ଦେଖ ମୃଗଯୂଥ , ବନଗଜ କୁଳ ,
ବନ ମହିଷ—କଦମ୍ବ ! ବରାହ ସଂହତି !
କରି—ମୁକ୍ତା—ଦନ୍ତୁରିତ ମୃଗପତି—ମାର୍ଗ
ରୁଧିର—ଅଳକ୍ତ—ପଦ୍ମ—ପଟଳ—ପାଟଳ
ଚହ୍ନାଇ ଦେଉଛି ଅରେ ଧଦବା ପଦାଙ୍କ' ?
ଅନୁସର ଦ୍ରୁତପଦେ ବାଗୁରା ହସ୍ତରେ !
ଅଲୋଲ କାତରତର ତରଳ ତାରକା—
ରୁରୁପତି ଲୁଣ୍ଠିସାର କରୁଣ କୂଜିତ !
ଘଣାର ତୁଷାର—ଅଦ୍ରି ଶାର୍ଦ୍ଦୂଳ ଭ୍ରୂଭଙ୍ଗୀ
ଦେଖ ପୁଚ୍ଛାଗ୍ରେ ତବ ଗ୍ରୀକବ ପଦ୍ଧତି "
ମୃଗଯୂଥର ନହତ ଗଜଯୂଥପତି—
ପ୍ରଣମ୍ପିନୀ—ଅନୁଗତ କଲଭ ଚିତ୍କାର ,
ପବନ ଧୂନନେ ପୁଣି ତୀକ୍ଷ୍ଣ ଅସିଧାର
କ୍ୱଣିତ ; ବନାନ୍ତ ବ୍ୟାପି ସାରମେୟ ରବ
( ଶାନ୍ତର ବିରୋଧୀ ସଦା , ତାପସ ଆଶ୍ରମେ )
ଜନ୍ମାଉଁ ଥିଲା ନୂନଣି! ବିଷମ ଚହଳ ;
ନବର୍ତ୍ତନ୍ତେ ବିଚ୍ଛକ୍ଷଣେ ଦେବ ! କୋଳାହଳ
( କ୍ଷୁଭିତ ଜଳଧି, ଯଥା ଝଡ଼ ଅପଗମେ ) ;
ନିଃଶେଷ ବର୍ଷଣ ମୂକ ମେଘବୃନ୍ଦ ପରି

ନିସ୍ତବ୍ଧ ହୋଇଲା ଦେଖ ତପୋବନ ସ୍ଥଳୀ ।
ନିବର୍ତ୍ତିଲା ମନୁଷ୍ୟଙ୍କ ହୋଇ କୁତୂହଳୀ
ଦେଖିଲି କୋଟରୁ ଯାହା ପର୍ଶଙ୍କ ମାନସେ
ଉଦ୍ୟାପି ଜନ୍ମାଏ ମୋର ହୃଦୟେ ପ୍ରକମ୍ପ !
ମୂର୍ତ୍ତିମନ୍ତ କାଳରାତ୍ରି ? ଅବା ଅନ୍ଧକାର ?
ମୂର୍ତ୍ତିମନ୍ତ ଅମଙ୍ଗଳ ? କିବା ପ୍ରେତପତି ?
ରସାତଳୁଁ ସମାଗତ ଅଥବା ସୁମାଳୀ ?
ଅଶେଷ ଦଣ୍ଡକାରଣ୍ୟ- ବାସୀ ମୁନିଜନ-
ଅଭିଶାପ ଘନୀମନ୍ତ ପଶ୍ୱେ ଦୁର୍ଦ୍ଧର୍ଷ !
ଉତ୍ପାତ ଦେବତା ସମ ଦେଖିଲି ସଭୟେ ,
ଜନ୍ମାନ୍ତରାଗତ ଏକଲବ୍ୟର -- ସଦୃଶେ ।
ମାଂସ—ମଦ-ବିଘୂର୍ଣ୍ଣିତ କନୀନ୍ଦ୍ର-ଯୋତକ—
ଭାଲପଟେ ଅଙ୍କୁରିତ ରୋମ ଗୁଚ୍ଛ ସମ --
କୁଣ୍ଡଳ , କୁଟିଳ କେଶ ଅସ୍କନ୍ଧ-ଲମ୍ବିତ ;
ଅଚିର-ଅହତ ମଦମତ୍ତ ଦନ୍ତାବଳ-
କପୋଳ-ସୁଗୃହୀତ-ମଦ, ଅଗୁରୁ ସମାନ
ପ୍ରଲେପିତ ଅଙ୍ଗସାରେ ପରିମଳ ପ୍ରିୟ —
ମିଳିନ୍ଦ ସେବିତ ସେହି ମୃଗମ୍ଭୂ ପଙ୍କକୁ ;
ଶିଳା ସମ ବିସ୍ତାରିତ ଦୃଢ଼ ବକ୍ଷସ୍ଥଳେ
ହରିଣ-ରୁଧିର—ବିନ୍ଦୁ ସଙ୍ଗେ ସ୍ୱେଦ-କଣା
ଯେହ୍ନେ ଗୁଞ୍ଜାଫଳ ମିଶା ମୁକ୍ତା ଆଭରଣେ
ମଣ୍ଡିଇ, ଗ୍ରୀବାରେ ପୁଣି ଗ୍ରୈବେୟକ ସମ,

କରୀନ୍ଦ୍ର-ମଦ-ମଳନ ପୃଥୁଲ କର୍କଶ
ଅଲ୍ଲନ ଉରୁଯୁଗଳ, ଲକ୍ଷାରସାରୁଣ
କୌଷେୟ ବସନେ ବଦ୍ଧ ପ୍ରସୃତ ପର୍ଯ୍ୟନ୍ତ ;
ଶାଦ୍ୱଳ ଶ୍ୟାମଳ ଶସ୍ୟ-ଖଣ୍ଡିକା-ସଂସ୍କୃତ
କୃଷିଶୀଳ-କୃଷ୍ଣସାର- ଜଠର—ଛେଦନ—
ଅଲ୍ପସ୍ତ—ରୁଧିର୍ଶରଣ—ଛଦ୍ମାଳ ଦାମ୍ଭିକ
ବିଷମ ବୈଧବ୍ୟ ଦୀକ୍ଷା ଦାନେ ଏଣୀଗଣେ
ସୁଚତୁର ଶ୍ୱାନ ଅନୁଗତ ଚମୂପତି
ମୃଗୟୁ ବାନ୍ଧବ ସଙ୍ଗେ ଅସଇ ଅଦୂରେ
ବଦିତ ମାତଙ୍ଗ ନାମେ ମୃଗୟୁ ସେନାନୀ ;
ଅଜ୍ଞାନମଗ୍ନ ଜୀବନ ସାଧୁ ବିଗର୍ହିତ,
ନରମାଂସ ଉପହାର ଯା'ଦେବୀ—ପୂଜନେ,
ନିଷ୍ଠୁରା କ୍ରୂର କାର୍ମୁକେ, ସହାୟ ସାୟକେ
( ମୁଖ ଯାର ବିଷଦଗ୍ଧ ଭୁଜଙ୍ଗ ପରାଏ )
ଶାର୍ଦ୍ଦୂଳ ସହ ପ୍ରବାସ, ମୈର୍ଯ୍ୟରେ ଜାଗ୍ରତ,
ବିଟଧର—ଫଣୀ—ମଣି ଭୂଷଣ ଯାହାର
କରିମଦ-ଅଙ୍ଗରାଗ, କାନନ ନିବାସ
କ୍ରମେ କ୍ରମେ ଅସି ମୁଁହି ଶାଳ୍ମଳୀ-ଗ୍ରସ୍ତରେ
ବସନ୍ତେ, ଅଧର ଏକ ଶବର ଯୁବକ,
ବୈଦୂର୍ଯ୍ୟ - ଦ୍ରବାନୁକାରୀଅଧରସରରୁ,
( ଇନ୍ଦୁ ନିସ୍ୟନ୍ଦିତ ? ଅବା ଶରଦଭ୍ର ଦ୍ରବ ? )
ବିମଳତ, ଅଚଚନ୍ଦ ପଦ୍ମରେ ସୁବାସ

କମଳିନୀ - ଦଳ—ପୁଟେ ସଲିଳ ଅନ୍ତରୁ
ଯୌତପଙ୍କ ସୁନିର୍ମଳ ମୃଣାଳ , ପୁଷ୍କର,
ଭେଟିଲି ବାନ୍ଧବୀପତ୍ର—ଗ୍ରନ୍ଥରେ ତକ୍ଷଣେ;
( କ୍ରୂର ଗ୍ରହ ଭୁଞ୍ଜେ ଯଥା ଦେବ ! ଶଶିକଳା
ମୃଣାଳ ଦଂଶିଲି ତଥା ଚମ୍ପତ୍ର—ମୁଖେ )
ନିବର୍ତ୍ତନ୍ତେ ଖେଦ ପୁଣି ଲଭନ୍ତେ ତୃପତ
ଅଭିମତ ଦିଗନ୍ତରେ ଗମିଲେ ତ୍ୱରିତେ ,
ମୃଗୟା-ବାହିନୀ ଯେବେ ହେଲେ ତିରୋହିତ
ବିଳମ୍ବିଲା ତହିଁ ଏକ ଜରତ—ଶବର ;
ହରିଣ—ପିଶିତାଶନ ନପାଇ ଲୁବ୍ଧକ
ନିରାଶାରେ ପିଶିତାର୍ଥୀ ଥିଲା ସେହି କାଳେ;
ଜନଗ ଯାହାର ମାଂସ—ଭୋଜନ-ଲାଳସା-
ଯୋଗୁଁ ଶୁକକୁଳ —ନୀଡ଼ ଭ୍ରୂକୁଟି ବିଭ୍ରମେ
ଗୋଟି ଗୋଟି ଗଣି ସେହି ଶୋଧନ ,ପକ୍ଷୀପତ୍ର
ହରି ନେଉଥିଲା ଆମ୍ଭ ଅର୍ଦ୍ଧେକ ଆୟୁଷ ;
ଜନ୍ମିବାରୁ ଅରୁକ୍ଷା ମନରେ ତାହାର
ବନ୍ଧୁ-ତାଳ-ତୁଙ୍ଗ ଅତ୍ରଂକଶ ଶାଖୀ ଶିଖେ
ଉଠିଲା ସହଜେ, ପୁଣି କୋଟର-ଅନ୍ତରୁ
ବନସ୍ପତି ଫଳସମ ଗୋଟି ଗୋଟି କରି,
ଅଳକ୍ଷଣେ ନାଶିଲା ସେ ଶକୁନ ଶାବକ ;
ସେକାଳେ ଶୁକ-ପୋତକ ଗର୍ଭକ୍ଷୟ ଯୋଗେ,
ଦଣ୍ଡଥିଲେ ପାଦପର କୁସୁମ ପଲ୍ଲବ ;

ମରଣ—ଭୟ-ଉଦ୍‌ଭ୍ରାନ୍ତ ତରଳ—ତାରକ
ପ୍ରାଣହର – ଉପପ୍ଳବ —କମ୍ପିତ—ଶରୀର—
ମୋବୃଦ୍ଧ—ଜନକ ଜାଣି ବିପଦ ନିକଟ
ତ୍ରାସ— ବିଗଳିତ—ସନ୍ଧି ଜୀର୍ଣ୍ଣ—ପକ୍ଷପୁଟେ
ଘୋଡ଼ାଇ ରଖିଲେ ମୋତେ ପ୍ରତୀକାର ପାଇଁ;
କିନ୍ତୁ ଦେବ ଜୀର୍ଣ୍ଣଶିଳା-ଭେଦି- ଭେଦୋପମ
କରତଳ କୋଟରରନ୍ଧ୍ରେ ପ୍ରବେଶ କରାଇ
ଅନ୍ତକ—ଦଣ୍ଡାନୁକାରୀ ମୃଗୟୁ ଦୋର୍ଦ୍ଦଣ୍ଡ
ମୁହୁର୍ମୁହୁ—ଦତ୍ତବଳ୍ଗୁ ପ୍ରହାର—କରୁଣ—
କୂଜିତ ସହାୟ ହୀନ ମୋର ବୃଦ୍ଧ ତାତେ
ନାଶିଲା ଘାତୁକ ଦେବ! ଅନ୍ଧକ ପରସ୍ତେ ;
ପକ୍ଷ ଅନ୍ତରାଳେ ମୋର ଅକୁଞ୍ଚିତ ଦେହ
ଦେଖିଲା ନାହିଁ ସେକାଳେ ଶବର ନୃଶଂସ;
ପଡ଼ିଲି ପାଦପ ମୂଳେ ପିତାର ସହିତେ
ସେକାଳେ ଉପରୁ ଫିଙ୍ଗି ଦେଲା ମୃତାଣ୍ଡ;
ବାୟୁ—ପୁଞ୍ଜୀଭୂତ—ପର୍ଣ୍ଣ ଉପରେ ପତନେ
ଘଟିଲା ଅଙ୍ଗରେ ମୋ ବିଶେଷ ବିକ୍ଳବ;
ନ ଓହ୍ଲାଉଁ ବୃକ୍ଷାଗ୍ରରୁ ସେ ପାପଧାମର
କୃତାନ୍ତ ମୁଖ —କୁହରୁ ନିଃସୃତ ପରି ,
ଲୁଣ୍ଠିତ ଶଶାରେ , ପିତା ଉତ୍ସଙ୍ଗ ସମାନ
ବନକର ମଦଜଳ ସିକ୍ତ ପରା—
ମସୃଣ , ଗହନ ପୁଣି ଦୁର୍ବାସାନ୍ଦ୍ରକାରୀ

ମହାର୍ଘ ତମାଲ ତଳେ ପ୍ରବେଶିଲି ଉତ୍ସେ;
ଗୁଞ୍ଜିଲା ମୋ ହୃଦ-ସର, କଲ୍ପିଲା ବେପଥୁ
ପିପାସାକୁଳିତ—ଚିତ୍ତେ ଦେଖିଲି ଅଦୂରୁ
ଖିନ୍ନଜଳ-ନଯନଜ-ଗଣ୍ଡାସୂ ପୋତକେ
ପର୍ଣ୍ଣପୂର୍ଣ୍ଣେ ଲତା-ପାଶେ ସଯତ୍ନେ ସମ୍ଭାଳି
ଅନ୍ତକ ଅନୁସରିଲା ମୋନାକା-ମାର୍ଗକୁ ॥
ଶୁଣୁଥିଲି ଯେବେ ଦେବ ! ପଛର ମର୍ମ୍ମରି
ମଣୁଥିଲି ସେ ପିଶୁନ-ପାଦ—ଶବ୍ଦ ବୋଲି ।
ସଭୟେ ନିଷ୍କ୍ରାନ୍ତ ହୋଇ ସେ ପାଦପ ମୂଳୁଁ,
ଗମିଲି ତୃଷାର୍ତ୍ତେ ମୁହିଁ ସଲିଳ ପାଇଁକି,
ଜୀବନକୁ ଉଜ୍ଜୀବିତ କରିବାକୁ କେଉଁ
ନମଣନ୍ତ ନୃପବର ! ଏ ଜଡ଼ ଜଗତେ ,
ଥିଲା ମୋ ନିଷ୍ଠୁର—ପ୍ରାଣ ପିତୃ—ଅପଗମେ
ପ୍ରାଣରକ୍ଷା—ଉପଯୋଗ ସଲିଳ—ପାନରେ
ବଢ଼ିଲା ମୋ ନିର୍ଘୃଣିତ ଆଶା—ମରୀଚିକା ;
ଜଳଦେବତା—ମଞ୍ଜୀର—ନିକ୍ୱଣ ସମାନ
ମଦକଳ—କଳ ହଂସ—ମଞ୍ଜୁଳକୂଜନ
ଶୁଭିଲା ମୋ କର୍ଣ୍ଣପଥେ ଦୂରେ, ନରବର !
ସେକାଳେ ନଲିନ—ଷଣ୍ଡ-ପରିମଳ ଯୋଗ
ଦିଗନ୍ତରେ ବ୍ୟାପୁଥିଲା ସୁମନ୍ଦ ସମୀର;
କଲ୍ଲୋଳ—ଅନଳ ପ୍ରାୟେ ବଳୀବଧୂ—କର
ପରିତପ୍ତ କରୁଥିଲା ପାଂଶୁ ପଟଳକୁ;

ସତେ କି ମଧ୍ୟମାରୂଢ ଦେବ ତ୍ରିଶାଂପତି
ପିଙ୍ଗୁଥିଲେ ବହ୍ନିରେଣୁ ଶ୍ରୀକରସହସ୍ରେ
ନଚଳିଲା ଗୋଡ଼ ମୋର ବଢ଼ିଲା ପିପାସା
ଚତୁର୍ଦ୍ଦିଗ ଦେଖିଲି ମୁଁ ଅନ୍ଧକାର ମୟ ;
ସେକାଳେ ଅଦୂରବର୍ତ୍ତୀ ଜାବାଲି ଆଶ୍ରମୁଁ
ସର୍ବ ବିଦ୍ୟା ବିଶାରଦ ଜାବାଲି ତନୟ
ସମଧର୍ମ୍ମ ସବୟସ ତାପସ-କୁମାରେ—
ପରିବୃତ ହୋଇ ସେହି ତଡ଼ାଗ ତଟକୁ
ଯାଉଥିଲେ ତପୋଧନ ମାଜଣା ପାଇଁକି;
ତେଜଗୁଣେ ଦିଶୁଥିଲେ ଭାସ୍କର ପରାୟେ;
ଅଥବା ଖାଣ୍ଡବ—ବନ—ଦଗ୍ଧ-ପାବକ
କୈତବ-ବଟୁ-ବିଗ୍ରହ ଅଭିଲା ମନେ ;
ପନ୍ନଗ ବିଜଡ଼ିତ କଳଧୌତ ପରି
ତପଃପୂତ ଶୁକ୍ଳଦେହ ଗୈରିକ ବଲ୍କଳେ ;
ହିରଣ୍ମୟ ବାଳ ଭାନୁ ଉଷା ମୁଖେ ଯଥା
ଅପୀଶଙ୍ଗ ପ୍ରଭା ଯୋଗେ ଦିଶଇ ସୁନ୍ଦର ;
ଭସ୍ମ—ତ୍ରିପୁଣ୍ଡ୍ର ଅଙ୍କିତ ଲଲାଟ—ଫଳକ
ଶୋଭାଉଛି ସତେ ଦର୍ପ-କନ୍ଦର୍ପ—ଭୋଗକୁ
ନିଷେଧେ ନିବାରକ୍ଷନ୍ତ୍ର ତାପସ ତନୟ ?
ଗଗନ—ଗମନୋନ୍ମୁଖ — ବଳାକାନୁକାରୀ
ସ୍ୱର୍ଗମାର୍ଗ ଦର୍ଶାଇଲା ପରାୟେ ଉନ୍ନତଗ୍ରୀବ
ବିମଳ—ସ୍ଫଟିକମଣି—ବିନିର୍ମିତ [illegible]ଦେହ

କମଣ୍ଡଳୁ-ଅଧ୍ୟାସିତ ବାମ କରତଳ;
ତପସ୍ପୃଷ୍ଟା—ପୀତ—ମଖ—ଧୂମ ଛଟରରୁ
ଗାଢରେଦ୍ଧଂ ନୀଳ ପାଣ୍ଡୁରନ୍ଧ୍ର—ବିଲମ୍ବିତ
କୃଷ୍ଣାଜିନ ଛଳେ ଶୁଚି ରୁଚି କି ପ୍ରକାଶେ ?
ଦେବାର୍ଚ୍ଚନାର୍ଥେ, ଗୃହୀତ ବନାଳି-କୁସୁମ
ଅଷାଢ଼—ଦଣ୍ଡ—ବିଲଗ୍ନ ପୂର୍ଣ୍ଣ—ପର୍ଣ୍ଣପୁଟେ
ଦକ୍ଷ କରେ ତାପସର ଧର୍ମ—ଚିହ୍ନ ରୂପେ;
କୁସୁମ—ଲତାଲୋଲୁପ ଅଲୋଲ-ଲୋଚନ
ନୀବାର-ମୁଷ୍ଟି-ବର୍ଦ୍ଧିତ, ବିଷାଣ ଶିଖରେ-
ଉତ୍ଖାତ-ଗୃହୀତ-ପଙ୍କ-ଅଙ୍ଗ-ପ୍ରଲେପନ-
ଅନୁଗତ—କୃଷ୍ଣସାର ତାପସ ସହିତେ ;
ଅକାରଣ ମିତ୍ର ଯେଣୁ ସହଜ ହୃଦୟ
ଜନ୍ମିଲା ହୃଦୟେ ତାଙ୍କ ଅଧିକ କରୁଣା
ଦେଖିଲେ ଯେକାଳେ ମୋତେ ଅର୍ଦ୍ଧ—ମୃତପରି;
କହିଲେ ନିକଟସ୍ଥ ତାପସ ଦାରକେ:—
" ଏହି ଦେଖ ଅସଞ୍ଜାତ—ପକ୍ଷ ଶୁକ ଶିଶୁ
ଶ୍ୟେନମୁଖ ପରିଭ୍ରଷ୍ଟ ଅଥବା ନୀଡ଼ରୁ
ଉଚ୍ଚ—ପତନ—ପୀଡ଼ିତ ମୀଳିତ—ଲୋଚନ
ମୁହୁର୍ମୁହୁ କମ୍ପୁଅଛି ପୁଣି ମୁହୁର୍ମୁହୁ
ବିସ୍ତାରିତ କରୁଅଛି ଅଗ୍ର—ଚଞ୍ଚୁ—ପୁଟ ;
ଶିରୋଧର ଉତ୍ତୋଳନେ ଅଶକ୍ତ ଏ ଶିଶୁ "
ଶ୍ରୀମୁଖୁଁ ଏସନ- ବାଣୀ ଶୁଣି ତପସ୍ୱୀ

ନେଇଗଲେ ମୋତେ ସେହ୍ଵ ସରସୀ—ତୀରକୁ
ଅଞ୍ଜଳି ଅଗ୍ରରେ ଜଳବନ୍ଦୁ ମୋ ଶୋଷ୍ଟରେ
ଦେଇ ପର୍ଣ୍ଣୀଗଜ—କୃତୀ ଇଖିଲେ ଜୀବନ;
ସ୍ନାନାନ୍ତେ ବଳ୍କଲ୍ଷ ଣ ଧାରସ—ସଂକ୍ଷେପେ
ଭଗବାନ ଜଗତନ୍ତୁ ସବିତା ଉଦ୍ଦେଶି
ଅର୍ଘ୍ୟ ଦେଇ ବ୍ରହ୍ମର୍ଷି ଜାବାଲ—ତନୟ
ପଦ୍ମ—ପରାଗ—ସୁରଭି—ଶୁଭ୍ର ପକ୍ଷୀ—ବାର
କମଣ୍ଡଳୁ ପୂରି ସେହ୍ଵ ତଡ଼ାଗ ତଟରୁ
ଫେରିଲେ ଅଶ୍ରମେ ଦେବ ! ମତେ ସଙ୍ଗେକରି;
କିଛିଦୂର ଯାଇ ମୁହିଁ ଦେଖିଲି ଅଶ୍ରମ
ତାଳ-ତିଳକ-ତମାଲ-ହିନ୍ତାଳ-ବକୁଳ,
ଏଲା ଲତା—ବଢଉତ ନାରିକେଳ ବନ
ସୁରଭିତ ଲୋଧ୍ର ଗଛେ; ଉଲ୍ଲସନ୍ତ ଯହିଁ
ଅଳିକୁଳେ ଝଙ୍କାରିତ ସହକାର ତରୁ,
ଉନ୍ମଦ-କୋକିଳ-କୁଳ କଳାଳାପେ, ପୂର୍ଣ୍ଣ
ବିରଚିତ ବନଦେବୀ ଲତା ଦୋଳାସନ
ସୁସଜ୍ଜ, ବାତ—ଚଳିତ ଉନ୍ନତ ପାଦପେ
ଅଧର୍ମ-ନାଶ-ପିଶୁନ ⁂ ନକ୍ଷତ୍ର—ପତନ
ପରାଗେ; ଅତି ଧବଳ ବୃନ୍ତ-ବିଗଳିତ—
ଇ ଅର୍ଦ୍ଧଚନ୍ଦ୍ର ବନଦେବୀ ପରେ ;
ମାରତ ମାସୂ—କୁରଙ୍ଗ-ଅଲୁନ-ପ୍ରରୂଢ଼

⁂ ପିଶୁନ—ସୂଚକ

ବନବଲ୍ଲୀ, ଦାଶରଥି ଶୃପକୋଟି ସ୍ନାତ
ରଚିତ କନକ ବର୍ଣ୍ଣ ବଲ୍କଳେ ଆଶ୍ରମେ ;
ଜଳ କଳଶ ପୂରଣ ଧ୍ୱନି ଶୁଣି ଯହିଁ
ଉତ୍କଣ୍ଠିତ ସଚକିତ ଶିଖଣ୍ଡୀ ମଣ୍ଡଳ ,
ଅବିରତ ଅଗ୍ନ୍ୟାହୁତି-ପ୍ରୀତ-ଚିତ୍ରଭାନୁ
ଅମର ଲୋକ ଗମୀଚ୍ଛୁ-ତପସ୍ୱୀ ସକାଶେ
ଉଦ୍ଭୂତ ଧୂମ ପଟଳ ଛଳେ କି ରଚନ୍ତି
ନୀଳମଣିମୟ ସ୍ୱର୍ଗ-ସୋପାନ—ଶ୍ରେଣୀକୁ?
ତରଙ୍ଗ ଶ୍ରେଣୀ ସଂକ୍ରାନ୍ତ ରବି ବିମ୍ବ ଛଳେ
ଗଗନୁ ଓହ୍ଲାଇ ଅବା ସପ୍ତର୍ଷି ମଣ୍ଡଳ
ତପୋଧନ-ଦିଦୃକ୍ଷାରେ ମନକୁ ବଳାଇ
ଅସିଛନ୍ତି କି ଦୀର୍ଘିକା—ବାରି ଅବଗାହି ?
ଉଟଜ ବିଟଙ୍କେ ଦୋଳ ପଞ୍ଜରୀ ସାରିକା
ଘୋଷୁଥିଲେ ସୁବ୍ରହ୍ମଣ୍ୟ ବୈଦିକ ସ୍ତୁତିକୁ;
ଅନିଳ ଅବନମିତ ବନାଳି ବ୍ରତତୀ
ପ୍ରଣମିଲି ଯଥି ପୁଣି ଉଟଜ ଅଙ୍ଗରେ
ସଂନ୍ନିହିତ, ଆମଳକୀ , କର୍କନ୍ଧୁ , କଦଳୀ,
ଲବଲୀ, ଲବଙ୍ଗ, ଚୂତ, ପନସ, ଇଙ୍ଗୁଦୀ;
ସୋଦର-ପ୍ରତିମ ମଣି କୁରଙ୍ଗ ଶାବକେ
ଅଲୀକ ହୁଅନ୍ତି ସ୍ନେହେ ତାପସ ଦାରକ ;
ପରିଚିତ ଭସ୍ମଶୂନ୍ୟ ଅରଣ୍ୟ କୁକ୍କୁଟ
ବୈଶ୍ୱଦେବ—ବଳି—ପିଣ୍ଡ କରନ୍ତି ଭୋଜନ;

ବହନ୍ତ ପ୍ରଶାନ୍ତ ହୋମ ହୁତାଶନ ଯହିଁ
ପକ୍ଷପୁଟ ସମୀରଣେ କଲାପିକଲାପ;
ନୀବାର ଭୁଞ୍ଜନ୍ତି ପୁଣି କଳହଂସ କୁଳ ;
କରଭ ଅର୍ଦ୍ଧୋପଭୁକ୍ତ ବିକ୍ଷିପ୍ତ କୁଟିଳ
ବିଷଲତା ସରସ୍ୱତୀ ଭୁଜ ବିଗଳିତ-
ଶଙ୍ଖବଳୟ ପସ୍ୱପ୍ରେ ଉଠଇ ଅଙ୍ଗଣେ;
ଅରୁଣ—ଚନ୍ଦନ—ଲିପ୍ତ କରବୀର ପୁଷ୍ପ
ତପିଜନ ଅର୍ପିଛନ୍ତି ସବତା ଉଦ୍ଦେଶେ;
ହବିର୍ଧୂମ ବିନୁ ନାହିଁ ଆନ ମଳିନତା;
ଦେଖିଲ ଆଶ୍ରମପୀଠେ ଜାବାଲି ମୁନୀନ୍ଦ୍ର
ରକ୍ତାଶୋକ—ତରୁବର—ଘନଚ୍ଛାୟା—ତଳେ
କୁଳାଚଳ ମଧ୍ୟେ ଯେହ୍ନେ କନକ—ଶିଖରୀ,
କଳ୍ପାନ୍ତ ଦିବସେ ଯଥା ସହସ୍ର କିରଣ-
ରଶ୍ମି ବିଚ୍ଛୁରିତ ଦେହ, ହିମାନୀ ଅବୃତ
ଗୌରୀଗୁରୁ ଧବଳିତ, ସବ୍ୟେ ଉପବୀତ
ତ୍ରିଲୋକ ପାବନୀ ଯଥା ମନ୍ଦାକିନୀ ଧାର,
ସ୍ୱର୍ଗ ଅନ୍ୱେଷଣ ପାଇଁ ପୁଣ୍ୟ ରଜ୍ଜୁଛଳେ
ବହନ୍ତ ମସ୍ତକେ ମୂର୍ଦ୍ଧ ଲମ୍ବ ଜଟାଭାର;
ଭସ୍ମିତ ତ୍ରିପୁଣ୍ଡ୍ରରେଖା କୁଞ୍ଚିତ—କପୋଳେ
ଶ୍ରୀକରେ ସ୍ଫଟିକ—ମଣି—ଅକ୍ଷମାଳା ଭ୍ରମି
ସପ୍ତର୍ଷି ଅଟନ ଭ୍ରମ ଜନ୍ମାଏ ମନରେ;
ଅନଶନ ବ୍ରତଯୋଗୁଁ ଶିଥିଳ ଶରୀର

ବ୍ରତୀ ବେଷ୍ଟିତ କଳ୍ପ ପାଦପ ସମାନ;
ବିମଳ ସରସୀଜଳ—କ୍ଷାଳନ—ବିଶୁଦ୍ଧ—
ବଲ୍କଳ ଦୁକୂଳେ ଦିବ୍ୟ ତନୁ ସଜ୍ଜାଦିତ ;
ସ୍ୱୟମ୍ଭୂ ସମାନ, ପୁଣି ପୀଠ ନଦ୍ୟାମଦ୍ଧ
ଦେଖି ସେହି ତପୋଧନ —ତପସ୍ୟା—ପ୍ରଭାବ
କମ୍ପିତ ହୋଇଲା ମୋର ଶିଶୁ କଳେବର;
ସ୍ପୃହଥିଲ ବନ୍ଦିବେକ ନୟନେ ତାଙ୍କର
ଉତପ୍ତ—କନକ—ଗୌର ସୌଦାମିନୀ-କର;
କରତଳ-ଆମଳକ—ଫଳକୁ ପରାୟେ
ଦେଖନ୍ତି ନିଖିଳ ବିଶ୍ୱ-ଭୁବନ-ବିଦିତ-
—ପୁରାଣ-ତାପସ ନିଜ ଦିବ୍ୟ ଚକ୍ଷୁ ଯୋଗେ;
ଦେଖନ୍ତେ ସଦାଶେଷିଲ ଚର୍ମ ଚକ୍ଷୁ ବେନି;
ଆଉ ଅନ କଥା ଯାଙ୍କ ନାମ ଉଚ୍ଚାରଣେ
ଅଶେଷ ଦୁସ୍ତର ପାପ ହୁଏ ଅପଗତ ,
ଧନ୍ୟ ସେହି ପୀଠ ପୁଣି ଧନ୍ୟା ସରସ୍ୱତୀ
କରୁଣା ଜଳ ନିଷ୍ୟନ୍ଦ ଅଗାଧ ଗାମ୍ଭୀର୍ଯ୍ୟ
ଶ୍ରୀମୁଖ କମଳ ସୁଖ ଯେଣୁ ଅନୁଭବ
କରନ୍ତି ଦେବୀ ; ହଂସୀ ଯେସନ ମାନସେ;
ଜନନି ! ତିନ୍ତୁଳ ପୁରି ଧନ୍ୟ ସେହି ଇରା
ପ୍ରଳୟ ଭାସ୍କର କର ପରି ଦୁର୍ନିରୀକ୍ଷ
ମୁନ ଶିଖା ଅଗ୍ନିଲଯା ନହୋଇ କାତର,
ଯଥା ଦେବ ! କ୍ଷୀରହ୍ରଦ ହରିବସୁ ଶିଖେ ;

ଅଥବା କ୍ଷୀର-ପିଣ୍ଡ-ଧବଳା-ଜାହ୍ନବୀ
ସମ୍ପୃକ୍ତ ଶିରେ ଯଥା, ଜଗତ ବିଧ୍ୱଂସି
ଭାଲ-ବହ୍ନି ଥାଉଁ ସୁଦ୍ଧା ମଣ୍ଡିଲା ମୌଳିକୁ ।
ବେଦାଗ୍ନି ଧୂମ-ପଟଳ-ଆଚ୍ଛାଦିତ ବନ
ପ୍ରତିରୋଧ କରୁଅଛୁ ମାର୍ତ୍ତଣ୍ଡ କିରଣ,
ଭଗବତଃ ମୁନିବରେ ଭୀତ ହୋଇ ଯେହ୍ନେ
ସଯତ୍ନ କରନ୍ତି ପାଦ, ଦ୍ୟୁମଣି, ଆକାଶେ;
ପ୍ରଭଞ୍ଜନ-ଲୋଲ-ଶିଖା-ଜଟିଳ-ସପ୍ତାର୍ଚ୍ଚି
ମୁନି ପ୍ରୀତି ପାଇଁ ଯେହ୍ନେ ଅଖିଳ ପ୍ରସାରୁ
ମନ୍ତ୍ର ପୂତ ହବିର୍ଭାଗ କରନ୍ତି ଗ୍ରହଣ ;
କମ୍ପାଇ ବଲ୍କଲ ପଟ କମ୍ପାଇ ବ୍ରତତୀ
ପୁଷ୍ପ ପରିମଳ ଯେନି ସ୍ନାନ ସରସୁ
ଗନ୍ଧବହ ସେବୁ ଅଛୁ ସଶଙ୍କେ ମୁନିଙ୍କୁ;
କରୁଣା ପ୍ରବାହ ସମ, ସନ୍ତରଣ ସେତୁ
ସଂସାର-ସିନ୍ଧୁର, ପୁଣି ସନ୍ତୋଷ-ସାଗର,
ବିଷୟ-ଭୋଗ-ଲାଳସା-ଗହନ-କୁଠାର ,
ପ୍ରଜ୍ଞା ଚନ୍ଦ୍ରନେମି, ଲୋଭ-ଅର୍ଣ୍ଣବ-ବାଡବ,
ଶାସ୍ତ୍ରରୂପ ରତ୍ନାକର-ନିକଷ ସଙ୍କାଶ,
ବିଷୟ-ବାସନା ରୂପ ବିଶଲ୍ୟ ପ୍ରତି
ସର୍ବଗ୍ରାସି ଦାବାନଳ ସଦୃଶ ଭୀଷଣ,
ମୋହ ଅନ୍ଧକାର ପ୍ରତି ସାକ୍ଷାତେ ଭାସ୍କର,
ନରକ-ଦ୍ୱାର-ଅର୍ଗଳ-ବନ୍ଧନ ସମାନ,

ସରଳତା ମୂର୍ତ୍ତିମନ୍ତ , ପ୍ରଭବ ପୁଣ୍ୟର
ପବିତ୍ର ମୁନି ପୁଙ୍ଗବ ସେ ଅଶ୍ରମ ପୀଠେ ।
ଭଗବତଃ ପ୍ରଭାବରୁ ମାତ୍ସର୍ଯ୍ୟ ବୈରିତା
ଉଦ୍ଭେଦିତ ହୋଇଅଛି ସେହି ତପୋବନୁଁ;
ଚିରନ୍ତନ ବୈରଭାବ ତେଜି ଜୀବଶ୍ରେଣୀ
ଅବିରୋଧେ ତପୋବନେ କରନ୍ତି ବସତି;
ବିକଚ ଉତ୍ପଳ—ବନ-ରଚନାନୁକାରୀ
ଉତ୍ପକ୍ଷ୍ମ ଶୁଭ୍ର ଚନ୍ଦ୍ରକୀ ଶିଖଣ୍ଡ ସ୍ତମ୍ଭାରେ
ଉଦ୍ଦାମ-ଦ୍ୟୁମଣି-ଦ୍ୟୁତି-କ୍ଳାନ୍ତ ଅଧ୍ୱଗର
ନିଃଶଙ୍କେ କରଇ କ୍ରୀଡ଼ା ତପସ୍ୱୀ ପ୍ରଭାବୁଁ ;
ଅନୁପଜାତ କେଶର କେଶରୀ ଶାବକ-
ସଙ୍ଗତେ କୁଞ୍ଜର ଶିଶୁ ସହିତ ସମାନେ
ପିଉଅଛି ସିଂହୀ ସ୍ତନ୍ୟ ଆଦରେ ଆହ୍ଲାଦେ;
ବୁଭୁକ୍ଷିତ ଦନ୍ତୀବର କଲଭ ନିର୍ଭୟେ
ଚୁମ୍ବି ଚୁମ୍ବି ବିଦାରଣ ସୁଦକ୍ଷ-ହର୍ଯ୍ୟକ୍ଷ
ଶିଶିରକର ଧବଳ ମୃଣାଳ ସୋଦର
ସଟାଭାର କଦକ୍ଷାରେ ବଳାନ୍ତ ମନକୁ;
ଗଣ୍ଡସ୍ଥଳ ଶୋଭାକର ମଦାମ୍ବୁ- ନିସ୍ତଳ
ମଦଜଳ ପାନାସକ୍ତ ମଧୁପ ପଟଳେ
ନିବାରନ୍ତି ନାହିଁ ତହୁଁ କର୍ଣ୍ଣ ତାଳେ କରୀ
ଦୟା ପ୍ରରୋଚକ ତେଣୁ ଜାବାଳି ଅଶ୍ରମ ;
ରକ୍ତାଶୋକ ତରୁଛାୟେ ତାପସ କୁମାର

ରଖି ମଟେ, ଚଳିଲେ ସେ ପିତାଙ୍କ ଚରଣେ
ବସିଲେ ଅଦୂରେ ଯାଇ କୁଶାସନ ପରେ
ଜିଜ୍ଞାସିଲେ ମୁନି ସେହୁ ତନୟ ହାସ୍ୟେ ;
ଯାବତ ବାରତା ମୋର ଶୁଣି ତପୋଧନ
ପ୍ରତ୍ୟକ୍ଷ ସମ ଦେବ ! ଦେଖିଲେ ସନ୍ଦେହେ ;
ସକରୁଣ ଦୃଷ୍ଟି ତାଙ୍କ ପ୍ରସରି ନୋଦେହେ
ପ୍ରକ୍ଷାଳିଲା ଅଙ୍ଗ ମୋର ପୁଣ୍ୟ ଜଳେ, ସତେ ?
କାଳ ତ୍ରୟଦର୍ଶୀ ମୁନି ତପସ୍ୟା ପ୍ରଭାବୁଁ
କରତଳ ଗତ ପରି ଦେଖନ୍ତି ଜଗତ,
ଜାଣନ୍ତି ତାପସ ବୃନ୍ଦ ତାହାଙ୍କ ପ୍ରଭାବ
ଜିଜ୍ଞାସିଲେ ତେଣୁ " ଦେବ କେଉଁ ଅବିନୟେ
କେଉଁ ଜନ୍ମାନ୍ତର ଦୋଷେ ଜନ୍ମିଲା ଏ ଶୁକ
ଭରଣୀନ କୂଳେ, କିବା ଥିଲା ତାର ନାମ ?
ନିବାରନ୍ତୁ କୁତୂହଳ, ନିବର୍ତ୍ତୁ ସଂଶୟ ;
କହିଲେ ତାପସ " ପ୍ରାପ୍ତେ ଦିବସାବସାନ,
ଦୈନନ୍ଦିନ ବ୍ୟାପାରକୁ ଅଚଳ ସମସ୍ତେ
କହିବ ସମସ୍ତ ତାର ଜନ୍ମାନ୍ତର କଥା
ଚେତିବ ସେ ଶୁକ, ଶୁଣି ସ୍ୱପ୍ନ ଜ୍ଞାନ ପରି ।
ଏ କାଳେ ର ଦୈବଚକ୍ଷୁ ଦିବସ ବାନ୍ଧବ
ପଲ୍ଲବ-ରଞ୍ଜିତ-ଅଙ୍ଗ ତାର୍କ୍ଷ୍ୟ ଅଶ୍ୱପରି
ଶୋଭୁଥିଲେ ଅସ୍ତାଚଳ ପ୍ରତୀଚୀ ଲଲାଟେ,
( ତାପସ ରକ୍ତଚନ୍ଦନ ଅର୍ଘ୍ୟ ଲିପ୍ତ ହସେ ? )

ଅଥବା ଅପରାର୍ଣ୍ଣବ-ଶଫ୍ଟିତ ମୁରାର-
ନାଭି-ନଳିନ-ଗଳିତ ରକ୍ତ ମଧୁଧାରା-
ପରାଂଶୁ ଅମୃତଳ-ଲମ୍ବିତ ନଭିତ ;
ଅବଦାତ ପାରାବତ ଚରଣ ପାଟଳ-
ରାଗେ ରଞ୍ଜିଲଣି ତୋ ପ୍ରାଚେତସୀ ପଥ ,
ଦିବସାବସାନ ଦେଖି ସୌର କରଜାଳ
ପତଙ୍ଗୀ ପରାଏ ଗ୍ରନ୍ଥ କମଳିନୀ ବନ
ଅଣ୍ଡିଲେଣି ତରୁଣିରେ ପର୍ବତ ଶିଖରେ ;
ଅସ୍ତ ଉପଗତେ ଦେବ ! ସହସ୍ରଦୀଧିତି
ଉଲ୍ଲସିଲା ସନ୍ଧ୍ୟାରାଗ, ବିଦ୍ରୁମ ଗଗନ
ବିଦ୍ରୁମ-ଲତା-ପାଟଳ ବାରୁଣି ଅର୍ଣ୍ଣବେ ।
ପ୍ରୋଷିତ ଭର୍ତ୍ତୃକା ପରି ସରୀ ସରୋଜନୀ
କମଳ କୁଡ୍ମଳ ରୂପ କମଣ୍ଡଳୁ ଧରି
ଧବଳ ମୃଣାଳ ସୂତ୍ର ଯଜ୍ଞୋପବୀତନୀ
ବିଶଦ ସାରସ କୁଳ ପଥ ପରିଧାନା
ଅଚିରେ ତାପସୀବ୍ରତ ତପସ୍ୱିନୀ ବେଶେ ।
ପଡନ୍ତେ ପତଙ୍ଗ ପାଦ ସାଗର ଅମ୍ଭସି
ଛୁଟା ଛୁଟିଲେ ତାରାଗଣ ଉଦିଲେ ଅମ୍ବରେ ,
ଅଥବା ସିଦ୍ଧ ସୁନ୍ଦରୀ-କ୍ଷିପ୍ତ ସନ୍ଧ୍ୟାର୍ଚ୍ଚନ
କୁସୁମ ଅଞ୍ଜଳି ( ପୂଜିବାକୁ କାଳକର—
ପ୍ରଭାକର ପଦେ ) ଛୁଟିଲେ ତାରକା ଗଗନେ ;
ନବର୍ତ୍ତିଲା ସନ୍ଧ୍ୟାରାଗ ; ଅଥବା ତାପସେ

ତରଣି ପାଦ ପ୍ରକ୍ଷାଳ ଜଳାଞ୍ଜଳି ଯୋଗେ
ଯୋଗୁଥିଲେ ପ୍ରତୀଚୀପଟୁଁ କୁଙ୍କୁମ ଆଲୋକ ?
କଜ୍ଜଳ ନଭ ତନୀର ଦେହେ ବହ୍ନିବର୍ଣ୍ଣ
( ବୈରାଗିଣୀ ବେଶେ କୃଷ୍ଣ ଅଞ୍ଚଳ ପରାୟେ )
ଅବଶେଷ , ଦେଖି ସନ୍ଧ୍ୟା-ତରୁଣ ଦଶାକୁ ,
ଲୁଚାଇଲା ଅନ୍ଧକାର କାନନେ କନ୍ଦରେ
କାନ୍ତ ପ୍ରବେଶିଲା ନାହିଁ ତାପସମାନସେ ;
ତାରକା କପାଳ ଧାରୀ , ପୂର୍ଣ୍ଣେନ୍ଦୁ ଭୂଷିତ -
-ବସୁନ୍ଧରା ମଣ୍ଡଳୁଁ ଝରେ ମଙ୍ଗଳ ଧବଳ-
ଜ୍ୟୋତ୍ସ୍ନାପୂର ଦ୍ୱାରଶିରୁ ଯଥା ମନ୍ଦାକିନୀ ;
ଦକ୍ଷେଶ୍ୱର-ପୁଣ୍ଡରୀକ-ଗୌର-ସୁଧାକର-
ସରସୀ-ଚନ୍ଦ୍ରିକା-ଜଳ-ପିପାସୁ-କୁରଙ୍ଗ
ଅମୃତ-ପଙ୍କ-ବଲ୍କଳ-ମଣ୍ଡଳ ପରାଏ
ବସାଇଲା ମେଘାଳରେ ଏନବ କଳଙ୍କ ;
ପଡ଼ିଲା ଚନ୍ଦ୍ରମା କର କୁସୁମ ପାଣ୍ଡୁର
( ସିନ୍ଦୁରର ଫୁଟିଲା କି ଧରଣୀ ଅଛାଦ, )
ଉଦୟ ରାଗ ରଞ୍ଜିତ ରଜନୀ ନାୟିକ
ଭାଳ ଯୋଉ ଉଇଁବାରୁ ପ୍ରାଚୀ ଭାଲପଟେ ;
ଅକାଶ ଗଙ୍ଗାବଗାଢ଼ କ୍ଷାଳିତ ସିନ୍ଦୂର
ଅମ୍ବୁ-ବଲ୍ଲଭ କୁମ୍ଭ ପରାୟେ ସୁନ୍ଦର ;
ଧୀରେ ଧୀରେ ଉଇଁବାରୁ ଅମୃତ ବାଶ୍ୱତ
ସୁଧା ଲକ୍ଷ୍ମ ପଗ୍ରଦଶେ ଧରଣୀ ସୁନ୍ଦରୀ

ଶିରିଁ-ବନ୍ଦୁ ଦ୍ରବାଦ୍ଧ-ସୁମନ-ସନ୍ଧାର
-ପ୍ରଫୁଲ୍ଲ-କୁମୁଦବନ-କଷାୟ-ସୁରଭି
-ପରିମଳ-ସୁସେବିତ-ନଦ୍ରା-ଭ୍ରାଲସ
-ଅନ୍ୟୋନ୍ୟ-ଗ୍ରଥିତ-ଅକ୍ଷି-ଯୁଗ୍ମ-ପକ୍ଷପୁଟ
ପ୍ରେମନ୍ଥ-ମନ୍ଥର-ମୃଗ ଆଶ୍ରମ କୁରଙ୍ଗ
ଦର୍ଶାସନେ ସୁଖେ ସୁପ୍ତ ଉଟଜ ଅଙ୍ଗନେ;
ଚନ୍ଦ୍ରାତପ ଉଦ୍ଭାସିତ ଦେବ ! ତପୋବନେ
ବୈଖାନସେ ଉପବିଷ୍ଟ ଜାବାଲି ମୁନୀନ୍ଦ୍ର ,
ପବନ ଦର୍ଭ ଧବଳ ଧର ଜାଳପାଦ
ପେନୁଥିଲେ ମନେ ମନେ ତାଙ୍କ ତପୋଧନେ ,
ଜଣାଉଁ ସମ୍ମୁଖରେ ଶୁଣି କୁମାର ପ୍ରତୀକ୍ଷା
ଶୁଣିବାକୁ ମମ ଜନ୍ମାନ୍ତର କଥା ସବୁ
ଏକାନ୍ତ ମାନସ ସ୍ନେହ କୁମାର ଉଦ୍ଦେଶି
ଆରମ୍ଭିଲେ ଇତିହାସ କହିଲେ , ନୃପମଣି !
ଜନ୍ମାନ୍ତର କଥା ମୋର ପୁଣି ଭବିଷ୍ୟତ ;

——୧୦୦୬——